# ଦ୍ୱାବିଂଶ ଅଧ୍ୟାୟ

## ଉପବର୍ହଣର ପୁନର୍ଜୀବନ ପ୍ରଦାନାର୍ଥେ ଦେବଗଣଙ୍କୁ ଶ୍ରୀକୃଷ୍ଣଙ୍କର ଆଦେଶ

ସୌତି ବୋଇଲେକ ଶୁଣ ୨ ତପୋଧନ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇ ମହାନ ।
ଶ୍ରଦ୍ଧା ଆଉ ଭକତିରେ ଯେ ଜନ ପଢ଼ଇ
ଅନ୍ତକାଳେ ଯାଇ ବଇକୁଣ୍ଠରେ ବସଇ ।
ଏହାପରେ ଆନଗାଥା ଶୁଣ ଦେଇ ମନ
ଯେମନ୍ତ ଭିଆଣ କଲେ ପ୍ରଭୁ ଭଗବାନ ।
ବିପ୍ରରୂପୀ ନାରାୟଣ ମାୟା ଭିଆଇଲେ
ତାହାଙ୍କୁ ଦେବତା ମାନେ ଚିହ୍ନି ନ ପାରିଲେ
ଅବଶେଷେ ଦେବଗଣେ କରି ସମ୍ବୋଧନ
କହିଲେକ ବିପ୍ରରୂପୀ ଦେବ ନାରାୟଣ ।
ଶୁଣ ୨ ଦେବଗଣେ ମୋହର ବଚନ
ଉପବର୍ହଣ ଭାର୍ଯ୍ୟାକୁ ଦେଖନ୍ତୁ ନୟନ ।
ପତି ଶୋକେ କାନ୍ଦେ ଚିତ୍ରରଥର କୁମାରୀ
ପତି ଭିକ୍ଷା ମାଗେ ଅତି ଆକୁଳରେ ଗୋରୀ ।
ସମସ୍ତେ ଉଚିତ ଯାହା କରନ୍ତୁ ସକଳେ
ପତି ଶୋକେ କାନ୍ଦେ ସତୀ ଅନ୍ତର ବ୍ୟାକୁଳେ ।
ଅବଳାଟିଏ ଅଭିଶାପ କରିବେ ଅର୍ପଣ
ତୁମ ହିତ ହେତୁ ମୋର ଅଟେ ଆଗମନ ।
ପତି ପାଇବା ନିମନ୍ତେ ପ୍ରବୋଧ ବଚନେ
ଶାନ୍ତ୍ୱନା କରି ରଖିଛୁ ତାଙ୍କୁ ଏହିସ୍ଥାନେ ।
ଏଥି ପୂର୍ବେ ସମ୍ମିଳିତ ହୋଇ ସର୍ବ ଦେବେ
ହରିଙ୍କ ସଦନେ ଯାଇଥିଲେ ଏଥି ପୂର୍ବେ ।
ପ୍ରଭୁ ଆସିବାକୁ କହିଥିଲେ ଶୂନ୍ୟବାଣୀ
କିମ୍ପା ନ ଆସିଲେ ଏ ପର୍ଯ୍ୟନ୍ତ କମ୍ବୁପାଣି ।
ଏତେ ବୋଲି ମୌନଭାବ ଧରିଲେ ବ୍ରାହ୍ମଣ
ତାହାଙ୍କୁ ସମ୍ବୋଧି ବୋଇଲେକ ପଦ୍ମାସନ ।
ଶୁଣ ୨ ଆହେ ବିପ୍ର ବଚନ ଆମ୍ଭର
ମମ ପୁତ୍ର ଅଟେ ଏହି ଗନ୍ଧର୍ବ କୁମାର ।
ଅଭିଶାପେ ଜନମିଛି ଗନ୍ଧର୍ବ ଭବନେ
ଅଭିଶାପେ ମରିଅଛି ଯୋଗବଳ ସ୍ୱନେ ।
ନିରୂପିତ କାଳ ହୋଇନାହିଁ ଯେ ପୂରଣ
ସହସ୍ରେ ବରଷ ସ୍ଥିର ରହିଅଛି ପ୍ରାଣ ।
ହରିଙ୍କ ପ୍ରସାଦେ ଏହିକ୍ଷଣି ଏ ପୁତ୍ରକୁ
ବଞ୍ଚାଇଣ ଦେବି ବିପ୍ର କହିଲି ତୁମ୍ଭଙ୍କୁ ।
ଏବେ ଏକ କଥାକୁ ହେ କରନ୍ତୁ ଶ୍ରବଣ
ସକଳ ଘଟରେ ବିଜେ ଜଗତ କାରଣ ।
ପ୍ରେମମୟ ପରମାତ୍ମା ସେହୁ ସନାତନ
ମୂର୍ତ୍ତି ନାହିଁ ତାହାଙ୍କର ଶୁଣ ଦେଇ ମନ ।
ଭକ୍ତ ଉପରେ କରନ୍ତି କରୁଣା ପ୍ରକାଶ
ଶରୀର ଧରନ୍ତି ସମୟରେ ଜଗଦୀଶ ।
ସର୍ବବ୍ୟାପି ହୋଇ ରହିଅଛନ୍ତି ଭୁବନେ
ଏଇ ହେତୁ ବିଷ୍ଣୁ ବୋଲି ଡାକେ ସର୍ବଜନେ ।
ତାହାଙ୍କ ଆଦେଶେ ମୁହିଁ କରଇ ସୃଜନ
ବିନାଶ କରନ୍ତି ପୁଣି ଦେବ ପଞ୍ଚାନନ ।
ତାହାଙ୍କ ଆଦେଶ ଶିରେ କରିଣ ଧାରଣ
ଧର୍ମସାକ୍ଷୀ ଧର୍ମ ଦେବ କରନ୍ତି ଶାସନ ।
ତାହାଙ୍କ ଆଦେଶେ କାଳ ସମସ୍ତ ଅନ୍ତରେ
ଦିବାନିଶି କରେ କାର୍ଯ୍ୟ ଏ ତିନ ସଂସାରେ ।
ଏତେ ବୋଲି ମୌନ ହେଲେ ଦେବ ପଦ୍ମାସନ
ବିପ୍ରଙ୍କୁ ସମ୍ବୋଧି ପୁଣି କହେ ପଞ୍ଚାନନ ।
ଶୁଣ ୨ ଆହେ ଶିଶୁ ବିପ୍ରର ତନୟ
କି ନାମ କାହାର ଶିଷ୍ୟ ଦିଅ ପରିଚୟ ।
କାହାର ବଂଶରେ ତୁମ୍ଭେ ଧରିଛ ଜନମ
କାରେ ଯାଉ ଆସିଅଛ କହ ଅଧୁନ ।
ମୋହର ଈଶ୍ୱର ସେହି କରି ଦୟାମୟ
ତାଙ୍କୁ ଉପହାସ କର ଏ ବଡ଼ ବିସ୍ମୟ ।
ପରମାତ୍ମା ହରି ସେହି ସଭିଙ୍କ ଅନ୍ତରେ
ବିରାଜ କରନ୍ତି ସଦା କହିଲୁ ତୁମ୍ଭରେ ।
ମନ ଜ୍ଞାନ ମେଧା ଆଦି ଦୟା ଆଦିକରେ
ଯେତେ କିଛି ଶକ୍ତି ଅଛି ଶରୀର ମଧ୍ୟରେ ।
ତାଙ୍କ ଆଜ୍ଞାବଶ ସର୍ବ ଜାଣିବେ ନିଶ୍ଚୟ
ସେ ମଧ୍ୟ ଦେହ ତେଜନ୍ତି ଆହେ ମହାମୟ ।
ତକ୍ଷଣେ ସେ ସର୍ବ ଶକ୍ତି କରନ୍ତି ପ୍ରସ୍ଥାନ
ଅଧିକ ବୋଲିବ କିବା ତବ ବିଦ୍ୟମାନ ।

କେତେକାଳ ତପ ମୂର୍ତ୍ତି କରନ୍ତି ସାଧନ
କେତେ କାଳ ତପ କରନ୍ତି ସନ୍ନ୍ୟାସନ ।
ତଥାପି ଆପଣମାନେ ବିବେଚନା କରି
ପରମ୍ପରା ହରିଙ୍କ ତତ୍ତ୍ୱ କିପ ବୁଝି ନ ପାରି ।
ଶ୍ରୀମୁଖେ ହରିନାମ କରଣ କୀର୍ତ୍ତନ
ମୃତ୍ୟୁଞ୍ଜୟ କରିଅଛନ୍ତି ସତ୍ତ୍ୱର ମଦନ ।
ହରିଗୁଣ ଗାଏ ଯେହୁ ଏକାନ୍ତ ଅନ୍ତରେ
ମୃତ୍ୟୁ ଭୟ ନ ରହଇ ତାହାର ଶରୀରେ ।
ଶୁଣ ୨ ବନ୍ଧୁଗଣ ଆମ୍ଭର ବଚନ
ଗୋଲୋକେ ବସନ୍ତି ସେହି ଦେବ ସନାତନ
ଯେ ଜନ ଭଜନ କରେ ବୈକୁଣ୍ଠ ନଗରେ
ଶ୍ୱେତ ଦ୍ୱୀପବାସୀ ସେହୁ ଜାଣିବେ ଅନ୍ତରେ ।
ଏ ତିନ ପ୍ରଭେଦ ଜ୍ଞାନ କିଛୁମାତ୍ର ନାହିଁ
ଏମନ୍ତ ଶ୍ରବଣ କର ତୁମ୍ଭେ ମନ ଦେଇ ।
ଏକ ବ୍ରହ୍ମା ପତି ହୋନ୍ତି ଯେତେ ସଂଖ୍ୟାହୀନେ
ହରିଙ୍କୁ ନିମିଷେ ହୁଏ ଶୁଣ ସର୍ବଜନେ ।
ଆମ୍ଭ ସଙ୍ଗତରେ ଛନ୍ତି ଯେତେ ଋଷିଗଣ
ଶ୍ରୀକୃଷ୍ଣଙ୍କର କଳାରୁ ହୋଇଛୁ ଉତ୍ପନ୍ନ ।
ତାହାଙ୍କ ମହିମା କେବେ ନ ପାରୁଛୁ ଜାଣି
ଏତେ ବୋଲି ମୌନ ହେଲେ ଦେବ ଶୂଳପାଣି
ତାହାରେ ଧର୍ମ ବୋଇଲେ ଆହେ ସୁରବର
ସର୍ବବ୍ୟାପି ଯେଣି ବାକ୍ୟ ମନ ଅଗୋଚର ।
ସର୍ବ ଆତ୍ମା ନିରଞ୍ଜନ ହୁଏ ଯେଉଁ ଜନ
ତାଙ୍କୁ ଉପହାସ କରେ ପଡ଼ଇ ଭ୍ରମେଣ ।
ସାଧୁଗଣ କେବେଁ ଆନେ ନିନ୍ଦା ନ କରନ୍ତି
ତାହାଙ୍କୁ ନିନ୍ଦଇ ଯେହୁ ଲଭଇ ଦୁର୍ଗତି ।
ହରି ନିନ୍ଦାକରେ ଅବା ଶୁଣେ ଯେଉଁଜନ
କୁମ୍ଭିପାକ ନରକେ ସେ କରଇ ଗମନ ।
ଏତେ ବୋଲି ଧର୍ମ ଦେବ ମଉନ ହୋଇଲେ
ବସ୍ତୁରୂପୀ ହରି ବୋଇଲେକ କୁତୂହଳେ ।
ଶୁଣ ୨ ସୁରଗଣ ଆମ୍ଭର ବଚନ
ଅଳୀକ ବିବାଦ କର୍ମ୍ମ କର ସର୍ବଜନ ।
ହରିନିନ୍ଦା କିବା ହେଲ ବଚନେ ଆମ୍ଭର
ଧର୍ମତଃ ଆମ୍ଭର ଦୋଷେ କର ହେ ସୁରବର ।
କହିଲେ ଆପଣା ମୁଖେ ତୁମ୍ଭେ ସର୍ବଜନ
ସର୍ବବ୍ୟାପି ହରି ରହିଛନ୍ତି ସର୍ବସ୍ଥାନ ।

ତାହାଯଦି ସତ୍ୟ ହୋଇଥାଏ ଦେବଗଣ
ଶ୍ୱେତ ଦ୍ୱୀପେ ଯାଇଥିଲ କୁହ କି କାରଣ ।
ଅଂଶେବା ଅଂଶୀରେ ଭେଦ କିଛୁମାତ୍ର ନାହିଁ
ଏଇହେତୁ କହୁଅଛି ଶୁଣ ମନଦେଇ ।
କଳାଅଂଶ ତ୍ୟାଗକରି ମିଳଣ ସକଳେ
ପୂର୍ଣ୍ଣବ୍ରହ୍ମ ସମୀପକୁ କିମ୍ପା ଯାଇଥିଲେ ।
କିବା ବିଷ୍ଣୁ କିବା ବ୍ରହ୍ମା କିବା ମହେଶ୍ୱର
ଧର୍ମ ଦିଗପାଳ ପୁଣି ଯେତେ ଦିଗମ୍ବର ।
କିବା ଏଇ ଚରାଚର ଯେତେ ଭୂତଗଣ
ପ୍ରତି ବିମ୍ବ ବିରାଜିତ ଛନ୍ତି ସର୍ବକ୍ଷଣ ।
କେତେ ଶତ ଅଛି ପୁଣି ଏହି ଜଗତରେ
କେତେ ବ୍ରହ୍ମାବିଷ୍ଣୁ ଛନ୍ତି କେତେ ଯେ ଅମରେ ।
ଈଶ୍ୱର ଇପୃତା କେହୁ କହି ନ ପାରଇ
ସକଳ ଈଶ୍ୱର କୃଷ୍ଣ ଶୁଣ ମନ ଦେଇ ।
ବ୍ରହ୍ମାଣ୍ଡର ଊର୍ଦ୍ଧ୍ୱ ଭାଗେ ବୈକୁଣ୍ଠ ନଗର
ଗୋଲକ ବସିଛି ଜାଣ ତାହାର ଉପର ।
ଚତୁର୍ଭୁଜ ଲକ୍ଷ୍ମୀକାନ୍ତ ବୈକୁଣ୍ଠର ପତି
ପାର୍ଷଦ ତଥା ନନ୍ଦ ସୁନନ୍ଦ ପ୍ରଭୃତି ।
ଗୋଲକ ବିହାରି ଯେଣି ସଭିଙ୍କ ଈଶ୍ୱର
ଦ୍ୱିଭୁଜ ରାଧିକା କାନ୍ତ ଶୁଣ ସୁରବର ।
ବେଷ୍ଟିତ ଅଛନ୍ତି ତହିଁ ଗୋପାଙ୍ଗନାଗଣେ
ଗୋପ-ପରିଷଦ କେତେ ନ ହୁଏ ଗଣନେ ।
ପରିପୂର୍ଣ୍ଣ ପୂର୍ଣ୍ଣବ୍ରହ୍ମ ତାହାଙ୍କୁହିଁ କହି
ସର୍ବଜୀବ ଆତ୍ମାରୂପୀ ସ୍ୱେଚ୍ଛାମୟ ସାଇଁ ।
କୋଟି ସୂର୍ଯ୍ୟ ଜିଣି ଜ୍ୟୋତିଃ ଅତି ଚମତ୍କାର
ସେ ଜ୍ୟୋତିଃ ବିରାଜକରେ ସଦା ଗୋଲାକାର ।
ଯୋଗୀଗଣ ବ୍ରହ୍ମଜ୍ଞାନେ ଏକାନ୍ତ ଅନ୍ତରେ
ନିରନ୍ତର ଧ୍ୟାନକରେ ସେଇ ଜ୍ୟୋତି କରେ ।
ସେ ଜ୍ୟୋତି ଭିତରେ ରୂପ କରିଣ ଧାରଣ
ସଦା ଶୋଭାପାନ୍ତି କୃଷ୍ଣ ଅତି ବିମୋହନ ।
ନବୀନ ନୀରଦ ଶ୍ୟାମ ସେଇ କଳେବର
ମୃଦୁ-ହାସ ପରିପୂର୍ଣ୍ଣ କିବା ଓଷ୍ଠାଧାର ।
ପୀତବାସ ପରିଧାନ ବ୍ରହ୍ମ ପୂର୍ଣ୍ଣ-ତମ
ଆପଣା ରୂପରେ କରେ ଆପଣି ରମଣ ।
ବୈଷ୍ଣବ ଯେ ହୃଦପଦ୍ମେ ବସାଇଣ ତାରେ
ଏକାନ୍ତ ଅନ୍ତରେ ଧ୍ୟାନ ଉପାସନା କରେ ।

ଏବେ ଏକ କଥା ଶୁଣିବ କହୁଛି ଶ୍ରବଣେ
ମମ ପଞ୍ଚତତ୍ତ୍ୱ ଗୃହିଁଅଛ ସର୍ବଜନ ।
ସେ ସବୁ ଘଟଣା ମାତ୍ର ଶୁଣ ମନଦେଇ
ବିବାଦ କରିବା କାର ପ୍ରୟୋଜନ ନାହିଁ ।
ଆଦ୍ୟେ ଦେବଙ୍କୁ ତୁମ୍ଭେ ପ୍ରାଣ ଦାନ କର
ଅନ୍ୟ ଅନ୍ୟ କଥା ପରେ କରିବେ ବିଚାର ।
ଏତେ ବୋଲି ବିପ୍ରମୂର୍ତ୍ତି ଦେବ ଜନାର୍ଦ୍ଦନ
ସେମାନଙ୍କ ଅଲକ୍ଷିତ ହୋଇ ବର୍ତ୍ତମାନ ।
ଏତେ ବୋଲି ଦେବଦାସୀ କହେ ଯୋଡ଼କର
ଶ୍ରୀହରିଙ୍କର ଚରଣେ ଭଜ ସର୍ବନର ।

— ⁕ —

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଉପବର୍ହଣଙ୍କର ଜୀବନ ଦାନଲାଗି ହରିଙ୍କର ଦେବତାଗଣଙ୍କୁ ଆଦେଶ ପ୍ରଦାନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

# ତ୍ରୟୋବିଂଶ ଅଧ୍ୟାୟ

## ଉପବର୍ହଣର ପୁନର୍ଜୀବନ ପ୍ରାପ୍ତି ଓ ମାଳାବତୀଙ୍କର ସ୍ତବ

ସୌତି ବୋଇଲେ ନ ଶୁଣ ଆହେ ତପୋଧନ
ହରିର ଅପୂର୍ବ ଲୀଳା କର ଦରଶନ ।
ବ୍ରହ୍ମା ଆଦି ଦେବଗଣ ବିଷ୍ଣୁଙ୍କ ମାୟାରେ
ମୁଗ୍ଧ ହୋଇ ଉପବର୍ହ ଗଲେ ଧୀରେ ଧୀରେ ।
ଉପନୀତ ହୋଇ ସର୍ବେ ଶବର ଗୋଚରେ
କମଣ୍ଡଳୁ ଜଳ ବ୍ରହ୍ମା ଦେଲେ ଶବ ପରେ ।
ସଲୀଳ ସ୍ପର୍ଶିଲା ସର୍ବ ଶରୀରେ ଯେସନ
ମନଃ ସଞ୍ଚାରିତ ହେଲା ଜାଣିବେ ତେସନ ।
ସୁନ୍ଦର ଶରୀର ହେଲା ଅତି ଚମତ୍କାର
ଜ୍ଞାନ ଦାନ କଲେ ତାର ଶିବ ବିଶ୍ୱମ୍ଭର !
ଧର୍ମ ଦେଲେ ଧର୍ମଜ୍ଞାନ ବିପ୍ର ପ୍ରାଣଦାନ
ଜଠରାଗ୍ନି ଦେଲେ ତାରେ ବହ୍ନି ମତିମାନ ।
କାମ ଦରଶନେ ହେଲା କାମର ସଞ୍ଚାର
ନିଶ୍ୱାସ ପ୍ରଶ୍ୱାସ ଦେଲେ ବାୟୁ ଗୁଣାଧାର ।
ସୂର୍ଯ୍ୟଙ୍କ ଦର୍ଶନେ ହେଲା ଦୃଷ୍ଟିର ଶକତି
ବାକ୍‌ଶକ୍ତି ସମର୍ପିଲେ ଦେବୀ ସରସ୍ୱତୀ ।
କମଳା ଦର୍ଶନ ତାର ହୋଇଲେ ଯେସନ
ଶରୀର ଶୋଭା ଧାରଣ କଲା ତତକ୍ଷଣ ।
ଏହିରୂପେ ଜୀବଦାନ ଯଦ୍ୟପି ପାଇଲା
ତଥାପି ଜଡ଼ ପରାୟେ ସେ ପଡ଼ି ରହିଲା ।
ପରମାତ୍ମା ଯେ ପର୍ଯ୍ୟନ୍ତେ ନୋହିଲେ ସଞ୍ଚାର
ଉଠି ନ ପାରିଲା ଶକ୍ତି ନ ହେଲା ତାହାର ।
ଏହା ଦେଖି ମାଳାବତୀ ବ୍ୟାକୁଳିତା ମନ
ସ୍ତବ ଆରମ୍ଭିଲା ସତୀ ନିତ୍ୟ ନିରଞ୍ଜନ ।
ବୋଇଲେ ଗୋଲୋକ ପତି ବୈକୁଣ୍ଠ ନିବାସୀ
ତୁମେ ପରାତ୍ପର ଅଟ ସର୍ବ ଘଟ ବାସୀ ।
ସକଳ କାର୍ଯ୍ୟରେ ତୁମ୍ଭେ ସାବଧାନ ହୋଇଲେ
ବର୍ଣ୍ଣି ନ ପାରଇ ଜୀବ ଏ ଜଗତେ ତିଳେ ।
ନିର୍ଲିପ୍ତ ସକଳ କାର୍ଯ୍ୟ ତୁମେ ଆଦିନାଥ
ସାକ୍ଷୀରୂପେ ବିରାଜ କରିଛ ସର୍ବନାଥ
ସଦା ସର୍ବ ସ୍ଥାନେ ତୁମେ ଅଟ ବିଦ୍ୟମାନ
ତୁମର ଚରଣେ କରେ ସତତ ପ୍ରଣାମ ।
ବ୍ରହ୍ମାଦି ଦେବତାଗଣେ ତବ ଆଜ୍ଞାବହ
ତୁମରି ସର୍ଜନା ଅଟେ ଏ ଜଗତ ମୟ ।
ସବୁଠାରେ ଥାଇ ତୁମ୍ଭେ ସବୁ ଲୋକଙ୍କରେ
ଦେଖା ଯାଉଅଛ ପ୍ରଭୁ ସବୁ ସମୟରେ ।
ତ୍ରୈଲୋକ୍ୟ ଜନନୀ ଯେଉଁ ପ୍ରକୃତି ଈଶ୍ୱରୀ
ତାହାଙ୍କୁ ଯେ ତୁମ୍ଭେ ନିଜେ ଅଛ ଜାତକରି ।
ସୃଷ୍ଟି କର୍ତ୍ତା ପ୍ରଜାପତି ସେବାକର ନିତି
ତୁମ୍ଭ ଗୁଣ ଗାନ କରୁଥାନ୍ତି ପଶୁପତି ।
ପାଳନ ସଂହାରକାରୀ ବିଷ୍ଣୁ ରୁଦ୍ର ପୁଣି
ଆପଣଙ୍କୁ ଧ୍ୟାନ କରୁଥାନ୍ତି ଗୁଣୀ ଗୁଣି ।
ସକଳ ଦେବତା ଯକ୍ଷ ଦାନବ କିନ୍ନର
ସିଦ୍ଧ ସାଧ୍ୟ ଯୋଗୀ ମନୁ ମାନବ ଆବର ।
ତୁମ୍ଭ ରୂପ ଚିନ୍ତାକରି ଆହେ ନାରାୟଣ
କରନ୍ତି ଅଶେଷ ଦୁଃଖ ପାତକ ହରଣ
ତପ ଫଳଦାତା ବରଦାତା ତୁମ୍ଭେ ଅଟ
ହେଲେ ତବ ଦୟା ଦୂର ହୁଅଇ ସଙ୍କଟ ।
ତପସ୍ୟା ସ୍ୱରୂପ ସର୍ବରୂପ ସର୍ବାଶ୍ରୟ
ସମସ୍ତ କର୍ମ ଆଶ୍ରିତ ସୁକ୍ଷ୍ମ ନିରାମୟ ।

ହୋଇଅଛ ତୁମ୍ଭେ ଏକା ପ୍ରଭୁ ସନାତନ
କରୁଥାଅ ଭକତର ମଙ୍ଗଳ ସାଧନ ।
କେତେ ମୁନି ଋଷିମାନେ ନିରାକାର ଭାବେ
ତୁମ୍ଭରୂପ ଚିନ୍ତା କରି ନିରନ୍ତର ଥିବେ ।
କୋଟି ସୂର୍ଯ୍ୟ ତୁଲ୍ୟ ତେଜମୟ ଅଟ ହରି
ମଣ୍ଡଳ ଆକାରେ ସବୁ ସ୍ଥାନେ ଅଛ ପୂରି
ସୁନ୍ଦର ମୂରତି କମନୀୟ ତୁମ୍ଭ ରୂପ
ଦରଶନ କଲେ ଛୁଇଁ ନ ପାରଇ ପାପ ।
ନବୀନ-ନୀରଦ ପରି ଶ୍ୟାମଳ ବଦନ
ଶରତ- ପଙ୍କଜଦଳ ସମାନ ଲୋଚନ ।
ପୂର୍ଣ୍ଣଚନ୍ଦ୍ର ବିମ୍ବ ତୁଲ୍ୟ ଶ୍ରୀମୁଖମଣ୍ଡଳ
ମନ୍ଦହାସେ ଦିଶୁଥାଏ ଅତ୍ୟନ୍ତ ମଞ୍ଜୁଳ ।
କୋଟିଏ କନ୍ଦର୍ପ ନୁହେ ସୌନ୍ଦର୍ଯ୍ୟର ସରି
ଲୀଳାର ସ୍ଥାନ ଯେ ତୁମ୍ଭେ ଅଟ ହେ ଶ୍ରୀହରି ।
ଚନ୍ଦନରେ ବିଲେପିତ ସର୍ବାଙ୍ଗ ଆବର
ରତ୍ନ ଅଳଙ୍କାରେ ଦିଶୁଥାଇ ମନୋହର ।
ବେନି ଭୁଜେ ସୁମଧୁର ମୁରଲୀ ବିରାଜେ
କଟିତଟେ ଝୀନ ପୀତ ସୂକ୍ଷ୍ମ ବାସ ସାଜେ ।
କିଶୋର ବୟସ ଶାନ୍ତ ରାଧିକା ବଲ୍ଲଭ
ଗୋପାଙ୍ଗନାଗଣେ ବିରାଜିତ ବାସୁଦେବ ।
କେତେବେଳେ ବୃନ୍ଦାବନେ କରୁଛ ବିହାର
କେବେ ଅବା ରାସଯାତ୍ରା ମଧ୍ୟେ ସୁରେଶ୍ୱର
ରାଧାଆଦି ରମଣୀଙ୍କ ସେବାରେ ତୃପତ
ହୁଅ କେତେବେଳେ ତାଙ୍କୁ କରିଅ ମୋହିତ ।
ପୁଣି ଗୋପବାଳକଙ୍କ ମେଳେ କେତେବେଳେ
ରମ୍ୟ ଉପବନେ ଖେଳା କରି ଚରୁଚଲେ ।
ବତ୍ସ ସଙ୍ଗତରେ ଗାଭୀମାନଙ୍କ ରକ୍ଷଣ
କରୁଅଛ କେତେ ଶିଶୁ ରୂପରେ ଭ୍ରମଣ ।
ଗୋଲୋକରେ ପାରିଜାତ ବନକୁଞ୍ଜେ ଥାଇ
ସୁରଙ୍ଗ ଅଧରେ ଦିବ୍ୟ ମୁରଲୀ ବଜାଇ ।
ଗୋପୀମାନସ ମୋହନ କରି ଅନୁକ୍ଷଣେ
ବିହାର କରୁଛ ଦେବ ଆନନ୍ଦିତ ମନେ ।
ବୈକୁଣ୍ଠରେ ଚତୁର୍ଭୁଜ ଶଙ୍ଖ ଚକ୍ରଧାରୀ
ଦେଖାଯାଏ ପ୍ରଭୁ ପାଶେ କମଳାଙ୍କୁ ଧରି ।
ଚତୁର୍ଭୁଜ ପାର୍ଷଦଗଣରେ ବେଷ୍ଟିତ
ହୋଇଥାଏ ଆହେ ଲକ୍ଷ୍ମୀକାନ୍ତ ଜଗନ୍ନାଥ
କେବଣ ସ୍ଥାନରେ ଅଂଶରୂପେ ଅବତରି
ଦୁଷ୍ଟ ନାଶି ରକ୍ଷା କରୁଅଛ ବସୁନ୍ଧରା ।
ଶ୍ୱେତଦ୍ୱୀପେ ବିଷ୍ଣୁରୂପ ଲକ୍ଷ୍ମୀଦେବୀ ସହ
ବିରାଜିତ ହୋଇଅଛ ଆହେ ବିଶ୍ୱମୟ ।
କେଉଁଠାରେ ଅଂଶକଳା ଯେନ ହୁଅ ଜାତ
ବ୍ରହ୍ମରୂପେ ବ୍ରହ୍ମାଣ୍ଡରେ ହୋଇଛ ବିଦିତ ।
ଶଙ୍କର ସ୍ୱରୂପ ତୁମ୍ଭେ ଅଟ ଶିବଲୋକେ
ଅଂଶମାତ୍ରେ ପୂରି ରହିଅଛ ମହୀଯାକେ ।
ଆହେ ବିଶ୍ୱରୂପ ତୁମ୍ଭ ଲୋମମୂଳେ ସ୍ଥାନ
ଲଭିକରି ରହିଅଛି ନିଖିଳ ଭୁବନ ।
ଏ ରୂପେ ଅଶେଷ ଲୋକ ପାଳନ ଅର୍ଥରେ
ଅବତାର ହେଉଅଛ ନାନା ପ୍ରକାରେ ।
କେତେବେଳେ ଯୋଗୀଙ୍କର ହୃଦେ ବାସକର
କେତେବେଳେ ମାୟାବଳେ ତାଙ୍କ ମନହର ।
ଜୀବରୂପ ସନାତନ ନିର୍ଗୁଣ ଯେ ଦେବ
ତାହାଙ୍କୁ ମୋ ସ୍ତୁତି କିବା ବର୍ଣ୍ଣନା କରିବ ।
ସହସ୍ର ମୁଖରେ ତୁମ୍ଭ ଗୁଣକୁ ଅନନ୍ତ
ବର୍ଣ୍ଣନା କଲେହେଁ ପାଇ ନ ପାରିବେ ଅନ୍ତ ।
ବ୍ରହ୍ମା ରୁଦ୍ର ଗଣପତି ମୟୂର ବାହନ
ତୁମ୍ଭଙ୍କୁ ବର୍ଣ୍ଣିବା ପାଇଁ ନୁହନ୍ତି ଭାଜନ ।
ଜଗତମୋହିନୀ ମାୟା ତୁମ୍ଭର ମାୟାରେ
ମୋହିତ ହୋଇଣ ରହିଅଛି ନିରନ୍ତରେ ।
ତୁମ୍ଭ ସ୍ତୁତି ଗାଇବାକୁ ଲକ୍ଷ୍ମୀ ସରସ୍ୱତୀ
ସମର୍ଥ ନୋହିଣ ଜଡ଼ ପ୍ରାୟେ ରହିଥାନ୍ତି ।
ପୁଣି ଯେଉଁ ବେଦ ଅଟେ ପୃଥିବୀରେ ସାର
ତନ୍ତ୍ରରେ ଯେ ଆଦିଅନ୍ତ ନ ମିଳେ ତୁମ୍ଭର ।
ଏମନ୍ତ ପ୍ରଭୁଙ୍କୁ ମୁହିଁ ଅବଳା କାମିନୀ
ବିହ୍ୱଳା ହୋଇଛି ପୁଣି ପତିଚିନ୍ତା ଯେନ ।
ଶୋକରେ ଅଧୀର ହୋଇଅଛି ମୋର ମନ
କି କରି ପାରିବି ପ୍ରଭୁ ବିଶେଷ ବର୍ଣ୍ଣନ ।
ସର୍ବ ଅନ୍ତର୍ଯ୍ୟାମୀ ନାଥ ଅଟ ଆହେ ହରି
ମୋ ପତିଙ୍କୁ ଜୀବଦାନ ଦିଅ ଦୟାକରି ।
ଏତେବେଳେ ମାଳାବତୀ ନୀରବ ହୋଇଲା
ଶ୍ରୀକୃଷ୍ଣଙ୍କଠାରେ ମନ ଦେଇଣ କାନ୍ଦିଲା ।
ସେ କଥାକୁ ଯୋଗବଳେ ଜାଣି ଜନାର୍ଦ୍ଦନ
ଭକ୍ତ ସନ୍ନିହିତରେ କଲେ ଶବହୃଦେ ସ୍ଥାନ ।

ଉପବର୍ହଣ ଗନ୍ଧର୍ବ ଉଠି ତତକାଳେ
ସାଣା ସେନ ପରବେଶ ହୋଇ ନଦୀଜଳେ ।
ବସନ ଧଇତ କରି ଦେବଙ୍କ ଚରଣେ
ବନ୍ଦନା କରି ଦେଖିଲେ ଅଛନ୍ତି ବ୍ରାହ୍ମଣେ ।
ସେହିକ୍ଷଣି ଯାଇ ତାଙ୍କ ପାଦତଳେ ପଡ଼ି
ସମସ୍ତଙ୍କ ଆଗେ ଉଭାହେଲେ କରଯୋଡ଼ି ।
ତାହା ଦେଖି ଦେବଗଣ ଦୁନ୍ଦୁଭି ବଜାଇ
ପୁଷ୍ପ ବରଷଣ କଲେ ସେହିଠାରେ ନେଇ ।
ସେ ସତୀ ପତ୍ନୀଙ୍କୁ ଶୁଭ ଆଶୀର୍ବାଦ କଲେ
ଆପଣା ପୁରକୁ ସୁଖେ ଯାଅ ବୋଲି ବୋଇଲେ ।
ଦେବଙ୍କ ଆଗରେ ଉପବର୍ହଣ କିନ୍ନର
ନୃତ୍ୟ ଗାନ କଲେ ରହି ଦଣ୍ଡେକ ମାତର ।
ଦେବତାଙ୍କ ବରେ ପୁଣି ତାଙ୍କ ପିତାମାତା
ଜୀବନ ପାଇଲେ ସେହିକ୍ଷଣି ଛାଡ଼ି ଚିନ୍ତା ।
ପିତା, ମାତା ପତ୍ନୀ ଘେନି ସେ ଉପବର୍ହଣ
ଗନ୍ଧର୍ବ ନଗର ପ୍ରତି କଲେକ ଗମନ ।
ଦେବତାଏ ଆପଣାର ଭବନକୁ ଗଲେ
ବ୍ରାହ୍ମଣ ବାଳକ ତହିଁ ଅନ୍ତର୍ଦ୍ଧାନ ହେଲେ ।
ଆନନ୍ଦରେ ମାଳାବତୀ ଦ୍ୱିଜଙ୍କୁ ଡକାଇ
ଦାନ କରିଦେଲେ ବହୁଧନ ରତ୍ନ ଗାଈ ।
ଏ ବାହାରେ ନାନାବିଧ ଭକ୍ଷ୍ୟ ଦ୍ରବ୍ୟମାନ
ଭୋଜନ କରାଇ ଦେଲେ ଦକ୍ଷିଣା ପୁଣ ।
ଦେବତା ମନ୍ଦିରେ ବେଦପାଠ କରାଇଲେ
ବିବିଧ ମଙ୍ଗଳ ଗୀତ ନୃତ୍ୟ ଆରମ୍ଭିଲେ ।
ପତିଙ୍କୁ ଘେନିଣ ମହାସୁଖେ ନିଜ ଘରେ
ପ୍ରବେଶ ହୋଇଲେ ଯାଇ ହରଷ ମନରେ ।
ଆହେ ମୁନିମାନେ ଯେଉଁ ସ୍ତବ ମାଳାବତୀ
ପାଠକଲେ ତାର ଫଳ ଶୁଣ ଦେଇ ମତି ।

ଦେବପୂଜା ସମୟରେ ଏ ସ୍ତବକୁ ଯେବେ
ପଢ଼ିବ ଶ୍ରୀକୃଷ୍ଣ ତୋଷ ହୋଇବେଟି ତେବେ ।
ବର ପାଇବା ଇଚ୍ଛାରେ ଯେଉଁ ଭକ୍ତଜନ
ପଢ଼ଇ ତାହାକୁ ବର ଦିଅନ୍ତି ଭଗବାନ ।
ପୁଣି ଧର୍ମ ଅର୍ଥ କାମ ମୋକ୍ଷ ଏହି ଚାରି
ଫଳ ପ୍ରାପତ ହୁଅଇ ଆହେ ତପସ୍ୱୀ ।
ବିଦ୍ୟା ଅଭିଳାଷୀ ହୋଇ ଯେ ଜନ ପଢ଼ିବ
ତାହାକୁ ଅବଶ୍ୟ ବିଦ୍ୟା ପ୍ରାପତ ହୋଇବ ।
ଧନ ଇଚ୍ଛାରେ ପଢ଼ିଲେ ନିଶ୍ଚେ ମିଳେ ଧନ
ଭାର୍ଯ୍ୟା ଇଚ୍ଛା ଥିଲେ ମିଳେ ରମଣୀ ରତନ ।
ପୁତ୍ରାର୍ଥୀ ପଢ଼ିଲେ ହୁଏ ଉତ୍ତମ କୁମର
ଧର୍ମ ଇଚ୍ଛା ଥିଲେ ଧର୍ମ ଲଭଇ ଅପାର ।
ଯଶ ଅଭିଳାଷୀ ପାଏ ବିପୁଳ କୀରତି
ରାଜ୍ୟଭ୍ରଷ୍ଟ ହୋଇଥାଏ ଯେଉଁ ନରପତି ।
ଏ ସ୍ତବ ପଢ଼ିଲେ ରାଜ୍ୟ ମିଳଇ ତାହାକୁ
ପ୍ରଜାହୀନ ହୋଇଥିଲେ ଲଭଇ ପ୍ରଜାଙ୍କୁ ।
ବ୍ୟାଧେ ପଢ଼ିଲେ ରୋଗୀ ରୋଗମୁକ୍ତ ହୁଏ
ବନ୍ଧନେ ପଡ଼ିବା ଲୋକ ଉଦ୍ଧାରକୁ ପାଏ ।
ଶତ୍ରୁଠାରୁ ଅବା ସିଂହ ବ୍ୟାଘ୍ରଠାରୁ ଭୟ
ହୋଇଥାଏ ଯେବେ କେଉଁ ଲୋକର ଉଦୟ ।
ଏହି ସ୍ତୁତି ପଠନରେ ଦୂର ହୋଇଯାଏ
ସେହିପରି ଚୋର ଅଗ୍ନି ଭୟ ନଷ୍ଟ ହୁଏ ।
ଆଉ ଯେ କେବେ ହେଲେ ବିପଦ ନ ପଡ଼େ
ଭକ୍ତି କରି ଯେବେ ଲୋକ ଏ ସ୍ତବକୁ ପଢ଼େ ।
କ୍ଷେତ୍ରମୋହନ ବୋଲଇ ଯୋଡ଼ି ବେନିକର
ଆହେ ପ୍ରଭୁ ମୋତେ ଭବସାଗରୁ ଉଦ୍ଧାର ।

---

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଉପବର୍ହଣଙ୍କର ପୁନର୍ଜୀବନ ପ୍ରାପ୍ତି ଓ ମାଳାବତୀଙ୍କର ସ୍ତବ ନାମ ତ୍ରୟୋବିଂଶୋ ଅଧ୍ୟାୟ ।

## ଚତୁର୍ବିଂଶ ଅଧ୍ୟାୟ

### ଉପବର୍ହଣର ମୃତ୍ୟୁ ଓ ଶୂଦ୍ରାଣୀ ଗର୍ଭରେ ଜନ୍ମ ହେବା

ଶୁଣିଲୁ ବିବୁଧ ଜନେ ମନକର୍ଣ୍ଣ ଦେଇ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ମହାନ ଅଟଇ ।
ପଠନ ଶ୍ରବଣ ଯେହୁ କରେ ଭକ୍ତିଭରେ
ଅନ୍ତକାଳେ ବସିବ ସେ ବୈକୁଣ୍ଠପୁରେ ।

କୃଷ୍ଣ ବୋଲି ଭଣ ନପଢ଼ି ଦୁଇଟି ଅକ୍ଷର
ମୃତ୍ୟୁ ସ୍ଥିତ ସ୍ତ୍ରୀପୁତ୍ର ଅଟେ ମୂଢ଼ାଧାର ।
ତପସ୍ୱୀ ଗଣଙ୍କୁ ବୃକ୍ଷ ବୋଇଲେକ ସୌତି
ଏଇରୂପେ ମାଳାବତୀ ଲଭ କରି ମତି ।
ବ୍ରାହ୍ମଣ ଭୋଜନ ବହୁ ଧନ ଦାନ କରି
ଯତନେ ପତିଙ୍କୁ ସେବା କରଇ ସୁନ୍ଦରୀ ।
ଏକାନ୍ତେ ପତିସେବା କରି ନିରନ୍ତରେ
ପତି ସଙ୍ଗେ ରତି ରଙ୍ଗେ ମାତିଲା ସତ୍ୟରେ ।
ଏମ୍ଭରୂପେ ବହୁକାଳ କରନ୍ତି ଯାପନ
ପତିରେ ଶ୍ରୀକୃଷ୍ଣ ମନ୍ତ୍ର କରାଇ ସ୍ମରଣ ।
କୃଷ୍ଣ ମନ୍ତ୍ର କୃଷ୍ଣ-ସ୍ତବ କବଚ ଅର୍ଚ୍ଚନା
କରାଇ ପତିଙ୍କୁ ସତୀ ଗନ୍ଧର୍ବ ଲଳନା ।
ବଶିଷ୍ଠ ଏହା ପୂର୍ବରୁ ରକ୍ଷଣ ପୁଷ୍କରେ
ଅର୍ପିଥିଲେ ସେହି ମନ୍ତ୍ରମାନ ଦମ୍ପତିରେ ।
ହରି ମନ୍ତ୍ର ଶିବମନ୍ତ୍ର କରିଥିଲେ ଦାନ
ଶିବମନ୍ତ୍ର ଭୁଲିଗଲା ଗନ୍ଧର୍ବ ଧୀମାନ ।
ତେଣୁ ସେ ବଶିଷ୍ଠ ଋଷି ବସିଣ ନିର୍ଜ୍ଜନେ
ପୁନଶ୍ଚ ଶିବଙ୍କ ମନ୍ତ୍ର ଦେଲେ ବେଦ ଜ୍ଞାନେ ।
ମନ୍ତ୍ର ପାଇ ଆନନ୍ଦିତ ଗନ୍ଧର୍ବ ଭୂପତି
ସୁଖେ ରାଜ୍ୟ ରକ୍ଷା କରେ ସେହି ମହାମତି
ମାଳାବତୀ ଆଦି ଯେତେ ପତ୍ନୀ ସହକାରେ
ଉପବର୍ହଣ ଗମିଲ କାନନ ଭିତରେ ।
ରତି ରଙ୍ଗେ ନିୟୋଜିତ ଆପଣାର ମନ
ବୃଦ୍ଧ ନରପତି ଏକା ରହିଲେ ଭବନ ।
କିଛି ଦିନ ସୁଖେ ରହି ସମୁଚିତ କାଳେ
ପତ୍ନୀସହ ଗଲେ ବୃଦ୍ଧ ଜାହ୍ନବୀର ଜଳେ
ସେହିକାଳେ ବେଦଜନ ତେଜଣ ଜୀବନ
ସମାନେ ବସିଣ ଗଲେ ବୈକୁଣ୍ଠ ଭୁବନ ।
ଅନ୍ତ୍ୟେଷ୍ଟି କ୍ରିୟା କରିଣ ସେ ଉପବର୍ହଣ
ଆନନ୍ଦେ କରିଲେ ପ୍ରଜାମାନଙ୍କୁ ପାଳନ ।
ତାହାପରେ ଯୋଗବଳେ ତେଜ କଳେବର
ଜନମ ଲଭିଲେ ଯାଇ ଶୂଦ୍ରାଣୀ ଗର୍ଭର ।
ମାଳାବତୀ ସତୀ ଦେଖି ପତିର ମରଣ
ପୁଷ୍କର ତୀର୍ଥରେ କରି ଅନଳ ସ୍ଥାପନ ।
ଅଭୀଷ୍ଟ କାମନା କରି ସେ ଅନଳେ ଡେଇଁ
ଭସ୍ମ ହୋଇଗଲେ ସର୍ବେ ଦେଖୁ ୨ ଠାଇଁ ।

ଯମାଳୟ ଯାଉଥିବେ ସତୀ ଜାତିସ୍ମର ହୋଇ
ସୃଞ୍ଜୟ ଆଳୟେ ଜନ୍ମ ହୋଇଲେକ ଯାଇ ।
ମନୁବଂଶ ରାଜା ସେହି ବିଖ୍ୟାତ ସଂସାରେ
ଜନମ କରିଲା ତାର ପତ୍ନୀର ଉଦରେ ।
ଯେ କାଳେ ଅଗ୍ନିରେ ସତୀ ତେଜିଲା ଜୀବନ
କାମ୍ନା କରିଥିଲା ମନ ମଧ୍ୟରେ ତକ୍ଷଣ ।
ଉପବର୍ହଣ ଯେମନ୍ତ ମୋର ପତି ହେବ
ଏଇ ବପୁ ମୋହପଟେ ସ୍ମୃତି ରଖିଥିବ ।
ଏରୂପେ କାମନା କରି ପରମା ସୁନ୍ଦରୀ
ତେଜିଲା ଜୀବନ ପତି ନାମକୁ ସୁମରି ।
ସୌତିଙ୍କ ବଚନ ସର୍ବେ କରିଣ ଶ୍ରବଣ
ଶୌନକ ସାଦରେ କହିଲେକ ସୁ ବଚନ ।
କିରୂପେ ଉପବର୍ହଣ ଶୂଦ୍ରାଣୀ ଗର୍ଭରେ
ଜନ୍ମିଲା ପ୍ରକାଶ କରି କୁହନ୍ତୁ ଆମ୍ଭରେ ।
ତାହାଙ୍କ ବଚନ ସୌତି କରିଣ ଶ୍ରବଣ
ବୋଇଲେକ ଶୁଣ ୨ ଆହେ ତପୋଧନ ।
ଦ୍ରୁମିଳ ନାମରେ ପୂର୍ବେ ଥିଲେ ନରପତି
କନ୍ୟାକୁବ୍ଜ ନଗରରେ ତାହାଙ୍କ ବସତି ।
କଳାବତୀ ପତ୍ନୀ ତାର ପତି ପରାୟଣା
ତାହାସମ ତିନିପୁରେ ନାହିଁକେ ଲକ୍ଷଣା ।
ଦୁଃଖର ବିଷୟ କନ୍ୟା ସେହି ରୂପବତୀ
ପୁତ୍ରାଭାବେ ରହେ ସଦା ହୋଇ ଦୁଃଖମତି ।
ସ୍ୱାମୀ ଦୋଷେ ବନ୍ଧ୍ୟା ଶେଷେ ହୋଇଲାପ୍ରମାଣ
କଶ୍ୟପ ମୁନିଙ୍କ ପାଶେ କରିଲା ଗମନ ।
ପୁତ୍ରପାଇବା ଆଶାରେ ଗମିଲା ସୁନ୍ଦରୀ
ଦେଖିଲା ସେକାଳେ ଆଶ୍ରମରେ ତପସ୍ୱୀ ।
ଧ୍ୟାନଯୋଗେ ବସିଅଛି ତାପସ ପ୍ରବର
ମାର୍ତ୍ତଣ୍ଡ ସମାନ ତେଜଃପୁଞ୍ଜ କଳେବର ।
ତାହାଦେଖି କଳାବତୀ ସଭୟ ଅନ୍ତରେ
ଲୁଚିହୋଇ ରହିଲେକ ମୁନିବର ଦୂରେ ।
କ୍ଷଣେ ପରେ ଧ୍ୟାନଭଙ୍ଗ ହୋଇଲା ତାହାର,
କଟିତଟେ ପୀନବାସ ଅତି ମନୋହର ।
ନୟନ ଯୁଗଳ ତାର ଦିଶେ ଅନୁପମ
କଟିତଟେ ପୀତବାସ ଦିଶେ ମନୋରମ ।
ମଧ୍ୟାହ୍ନ ଭାସ୍କର ପ୍ରାୟ ତେଜ ପ୍ରକାଶଇ
ଦେଖିଣ ଲଳନା ତାଙ୍କ ନିକଟେ ନଯାଇ ।

ଯୋଗାଏ ଦୂରରେ ଜଳ ହୋଇଣ ସୁନ୍ଦରୀ
ରହିଲା ଅଧୋ ବଦନେ ଲଜ୍ୟାଶୀଳା ଗୋରୀ ।
ଧ୍ୟାନ ଶେଷକରି ଋଷି ଦେଖିଲେକ ଅନାଇ
ଅପୂର୍ବ ଲଳନା ଗୋଟି ଦୂରେ ଅଛି ରହି ।
ରମ୍ଭା ଉର୍ବଶୀ କି ତିଲୋତ୍ତମାଙ୍କ ସହିତ
ରୂପରେ ଉପମା ନ ହେବ ସେହୁ କଦାଚିତ ।
ସୁନ୍ଦର ବଦନ ତାର ଅତି ମନୋହର
ଚମ୍ପକ ପୁଷ୍ପ ପ୍ରାୟେ ଅଙ୍ଗ ଶୋଭା ତାର ॥
ଷୋଡ଼ଶୀ ସୁନ୍ଦରୀ ନବ ଯଉବନା ଗୋରୀ
ଦେଖିଲେ ତାପସ ନ ପାରିବେ ଅସ୍ଥିର ।
ପୂର୍ଣ୍ଣିମା ଜହ୍ନ ପରାୟେ ମୁଖ ଶୋଭାପାଏ
ଦର୍ଶନ ହେଲା ତାଙ୍କର ଲାଜ ପ୍ରାୟେ ଶୋହେ ।
ସୁଧାଂଶୁ ଘନ କୁଣ୍ଡଳ ନିତମ୍ବ ଦେଶରେ
ପଡ଼ି ମନୋହର ଦିଶେ ଜନ ମନ ହରେ ।
ତିଳ ପୁଷ୍ପ ଜିଣି ତାର ନାସା ସୁ ଶୋଭନ
ସ୍ତନ ହସ୍ତ ଦିଶେ ପକ୍ୱ ତାଳଫଳ ସମାନ ।
ନୟନ କଟାକ୍ଷ କବି ବର୍ଣ୍ଣି ନ ପାରେ
ଦୃଷ୍ଟି ଦେଲେ ଶର ଯୋଗୀ ଯୋଗ ଭଗ୍ନ କରେ ।
ସ୍ୱର୍ଣ୍ଣମୟୀ ଦେବୀ ମୂର୍ତ୍ତି ପ୍ରାୟେ ସେ ଦିଶଇ
କଣ୍ଠରେ ମୁକ୍ତା ମାଳ ମାନ ଲମ୍ବିଥାଇ ।
ରୁଣୁ ଝୁଣୁ ଶବ୍ଦ ଥାଏ ନୂପୁର ଶବଦ
ହସ୍ତରେ ସୁବର୍ଣ୍ଣ ଚୂଡ଼ି ବାହେ ବାଜୁବନ୍ଧ ।
ପଦୁକଣ ମାଳ ମେଖି ଶାଢ଼ି ସର୍ବାଙ୍ଗରେ
ଫୁଟି ଦିଶଇ କାଞ୍ଚଲି ବସନ ଭିତରେ ।
ଏହି ପରକାରେ ସେହୁ ରମଣୀର ଶୋଭା
ବର୍ଣ୍ଣିବା ପାଇଁ ନାହିଁ ତା ସଙ୍ଗେ ଉପମା ।
ମୁନିଙ୍କ ରୂପରେ ଶୋଭା ହୋଇଛି ମୋହିତା
ପିଇଷ ବ୍ୟଗ୍ରିତ ତାର ନାହିଁ ଆନ ଚିନ୍ତା ।
ତାହାଙ୍କୁ ଦେଖିଣ ସେହୁ ନବୀନା ସୁନ୍ଦରୀ
ନେତ୍ର କୋଣେ ଠାରି ନିଜ ଭାବ ବ୍ୟକ୍ତ କରି ।
ସ୍ତନ ଉରୁ ହସ୍ତ ମଧ୍ୟ ଜାଣି ୨ ସେହୁ
ବସନ ଖସାଇ ଦେଲ ତପସ୍ବୀଙ୍କୁ ଦୃଷ୍ଟି ।
ଆବର ବେନି ବାହୁକୁ ଟେକିଣ ଚତୁରୀ
ଅଳସ ଭାବ ଦେଖାଇ ହେଲ ଉନ୍ମାଦରୀ ।
ତାହାଙ୍କ ଏମନ୍ତ ଭାବ ଦେଖି ଋଷିବର
ଜାଣିଲେ ସମସ୍ତ କଥା ଅନ୍ତର ମଧ୍ୟର ।

କହିଲେ ସେ କାମାତୁର ରମଣୀ ଅଟଇ
କାହିଁକି ମୋ ପାଖେ ଆସି ଏମନ୍ତ କରଇ ।
ଏଥିପରି ମନମଧ୍ୟେ ଚାହିଁ ଋଷିବର
ପଚାରିଲେ ଶାନ୍ତ ଭାବେ ପାଖେ ଯାଇ ତାର ।
ଆଗୋ ସୁକୁମାରୀ ତୁମ୍ଭେ କାହାର ନନ୍ଦିନୀ
କି ନାମ ତୁମ୍ଭର କିମ୍ପା ଆସିଅଛ ଧନୀ ।
ଏ ନିର୍ଜନ ବନେ କି କାରଣେ ଏକା ହୋଇ
ବୁଲୁଅଛ କହ ସଙ୍ଗତରେ କେହି ନାହିଁ ।
ସତ୍ୟ କରି ମୋ ଅଗ୍ରତେ କହ ତମ୍ଭାଗୋରୀ
ସନ୍ଦେହ ମୋଚନ ହେବ କର୍ଣ୍ଣେ ଶୁଣିକରି ।
ମୁନିଙ୍କର ବଚନକୁ ଶୁଣି ସେ କର୍ଣ୍ଣରେ
ଭୟରେ ସର୍ବାଙ୍ଗ ତାର ଥରିଲା ସେଠାରେ ।
ମନମଧ୍ୟେ ଶ୍ରୀକୃଷ୍ଣଙ୍କୁ କରି ସୁମରଣ
ମୁନିଙ୍କର ଆଗେ ଜଣାଇଲା ବିନୟେଣ ।
ବୋଇଲା ହେ ମୁନିଶ୍ରେଷ୍ଠ ଶୁଣ ମୋ ଉତ୍ତର
ମୁହିଁ ଗୋପନ ସା କନ୍ୟା ଦ୍ରୁମିଳ ରାଜାର ।
ଆପଣଙ୍କ ସନ୍ନିଧକୁ ସ୍ୱାମୀଙ୍କ ଆଦେଶେ
ଆସିଅଛି ପୁତ୍ର ଲାଭ କରିବା ମାନସେ ।
ଅନୁରୋଧ କରେ ତବ ପାଦତଳେ ମୁହିଁ
ଦୟାକରି ମୋ ଗର୍ଭରେ ପୁତ୍ର ଦିଅ ସାଇଁ ।
ତେଣୁ ମୋହ ସଙ୍ଗତରେ ରଙ୍ଗରସେ ମାତି
ବୀର୍ଯ୍ୟ ଦାନକରି ଦୟାକରି ଆହେ ଯତି ।
ଶାସ୍ତ୍ରେ ଲେଖାଅଛି ଯେବେ ରତି ବାଞ୍ଛା କରି
ଆସିଥିବା ନାରୀ ନ ସେବିବ ତପସ୍ୱରୀ ।
ପରସ୍ତ୍ରୀ ହରଣ ଦୋଷ ନ ହେବ ତୁମର
ଅନଳ ସମାନ ଯେଣୁ ଅଟ ସର୍ବସାଧୁ ।
ତୁମ୍ଭେ ସର୍ବ ପାପତାପ ତପ ପ୍ରଭାବରେ
ଜଳ ପୋଡ଼ି ଭସ୍ମ କରିଦେବ କ୍ଷଣକରେ ।
ଏମନ୍ତ କାମିନୀ ଗିର ଶୁଣି ସେ କଶ୍ୟପ
କହିଲେ ତାହାକୁ ମନେ ହେଲାପରି କୋପ ।
ବୋଇଲେ ଗୋ ଚନ୍ଦ୍ରାନନା କହିଲୁ ଯେ ଗିର
ଆମ୍ଭ ପକ୍ଷରେ ଉଚିତ ନୁହେଁ ଏ ବେଭାର ।
ଯେଉଁଜନ ଆପଣାର ଭୋଗ କଲା ସ୍ତ୍ରୀକି
ଅପର ହାତରେ ନେଇ ଦେଇ ଯାଚି କରି ।
ଲକ୍ଷ୍ମୀ କଦାପି ତାହାକୁ ନୁହନ୍ତି ସଦୟ
ଲେଖା ହୋଇଅଛି ଶାସ୍ତ୍ର ପୁରାଣେ ନିଶ୍ଚୟ ।

ଦ୍ରମିଳ ସ୍ୱଜନ ତେତେ ତେଜବାନ୍ତୁ ଏବେ
ଜାଣୁଅଛୁ ଆଉ ଭୋଗ କରି ନ ପାରିବେ ।
ଘରେ ରହିଥିବା ଦ୍ରବ୍ୟ ଫିଙ୍ଗିଲେ ବାହାରେ
ଆଉକ ପୁନଶ୍ଚ ସେହୁ ଲେଉଟଇ ଘରେ ।
ସହଜେ ତ ଅଟେ ମୂର୍ଖ ଜାତରେ ବ୍ରାହ୍ମଣ
ଏବେ ଉତ୍ତ କରୁଅଛୁ ତପ ଆଚରଣ ।
ଜାଣୁ ଜାଣୁ ଯେଉଁପରି ଶୂଦ୍ରର ସ୍ତ୍ରୀ ସଙ୍ଗ
ସମ୍ଭୋଗ କରିବ ପାପ ପୁଣ୍ୟ ନ ଭାବିବ ।
ବାମଣରେ ମାତ୍ର ଯେଉଁ ଦ୍ୱିଜ ମୂର୍ଖପଣେ
ଧୂର୍ତ୍ତ କରଇ ଆଣି ତାହାକୁ ଆପଣେ ।
ଚଣ୍ଡାଳ ମଧ୍ୟରେ ସେହୁ ଗଣନା ହୁଅଇ
ବ୍ରାହ୍ମଣ ବୋଲିଣ ତାକୁ କେହି ନ ଗଣଇ ।
ପିତୃଶ୍ରାଦ୍ଧେ ଯଜ୍ଞକାଳେ ଦେବତା ପୂଜାରେ
ଅଧିକାରୀ ନୁହଇ ସେ କେବଣ ପ୍ରକାରେ ।
ଇହଲୋକ ଥିବାଯାକେ ପତିତ ହୁଅଇ
ମୃତ୍ୟୁପରେ କୁମ୍ଭିପାକ ନରକେ ପଡ଼ଇ ।
ଆଉରି ତାହାର ଯେତେ ପିତୃ ମାତୃବଂଶ
ସକଳେ ଯାଇ ନରକେ କରନ୍ତି ନିବାସ ।
ତର୍ପଣ କାଳରେ ଯେଉଁ ଜଳ ସେ ଦିଅଇ
ମୂତ୍ର ସମାନରେ ସେହୁ ଗଣନା ହୁଅଇ ।
ଶ୍ରାଦ୍ଧକାଳେ ପିଣ୍ଡ ଦେଲେ ପୁରୀଷ ସଦୃଶ୍ୟ
ହୁଏ ତାହା ପିତୃଲୋକେ ନ କରନ୍ତି ଗ୍ରାସ ।
ତା ହାତରୁ ପୂଜାକାଳେ ନୈବେଦ୍ୟ ପଦାର୍ଥ
ନ ଖାଆନ୍ତି ସୁରଗଣେ ହୁଏ ତାହା ବ୍ୟର୍ଥ ।
ସନ୍ୟାସୀ ହୋଇଣ ଦ୍ୱିଜ ଶୂଦ୍ରନାରୀ ସଙ୍ଗ
କରେ ଯେବେ ଅପବିତ୍ର ହୁଅଇ ତା ଅଙ୍ଗ ।
ତାକୁ ଛୁଇଁ ତିନ ଦିନ ଉପାସ ନ କଲେ
ତା ଅଙ୍ଗରୁ ପାପ ନାଶ ନ ହୁଅଇ ହେଲେ ।
ଯଦ୍ୟପି ତା କରୁ ଅନ୍ନ କରିବ ଗ୍ରହଣ
ପୁରୀଷ ସମାନ ତାହା ଶାସ୍ତ୍ରର ପ୍ରମାଣ ।
ସେ ପାପରୁ ଚିରକାଳ କୁମ୍ଭୀପାକେ ପଡ଼ି
ନାନା ପରକାର କ୍ଳେଶ ଭୋଗୁଥାଇ ଗଡ଼ି ।
ତା ସଙ୍ଗରେ ତାର ଏକ ବଂଶର ପୁରୁଷ
ନରକ ମଧ୍ୟରେ ଯାଇ କରନ୍ତି ବାସ ।
ଶୂଦ୍ରର ଉଚ୍ଛିଷ୍ଟ ଯେବେ ଭୁଞ୍ଜଇ ବ୍ରାହ୍ମଣ
ଚଣ୍ଡିଲୁ ଯେତେକ ପାପ ହୁଏ ଉତପନ ।

ତାହା କହିବା ପାଇଁକ ମୋ ଶକତ ନାହିଁ
ଶୁଣ ଗୋ ଅଙ୍ଗିରମୁନି ଯାହାଛନ୍ତି କହି ।
ବ୍ରାହ୍ମଣ ଗଣରେ ସେହୁ ଅଧର୍ମି ଅଟଇ
ତା ସମ ନାରକୀ କେହି ତ୍ରିଜଗତେ ନାହିଁ ।
ବ୍ରାହ୍ମଣୀର ଅଙ୍ଗ ଯେବେ ଶୂଦ୍ର ଭୋଗକରେ
ପ୍ରଥମ ବୋଲାଏ ସେହି ପକ୍ଷୀଙ୍କ ମଧ୍ୟରେ ।
ଚଉଦଟି ଇନ୍ଦ୍ର କଳ୍ପ ସରିବା ପର୍ଯ୍ୟନ୍ତ
ନରକ କୁଣ୍ଡରେ ଥାଇ ହୁଏ ଅବିରତ ।
ବ୍ରାହ୍ମଣୀ ନରକେ ଅଷ୍ଟାଦଶ ଇନ୍ଦ୍ରକଳ୍ପ
ପଡ଼ି ରହିଥାଏ ସେହୁ ହୋଇ କୃମିପୋକ
ତଦନ୍ତରେ ଜନ୍ମ ହୋଇ ଚଣ୍ଡାଳ ଯୋନିରେ
ଉଚ୍ଛିଷ୍ଟ ଭକ୍ଷଣ କରେ ବୁଲି ଘରେ ଘରେ ।
ସେ ପାତକୀ ଶୂଦ୍ର ମଧ୍ୟ ଚଣ୍ଡାଳ ଜନମ
ଲଭଇ ସନ୍ଦେହ ଏଥେଁ ତିଳେ ନାହିଁ ଜାଣ ।
ଏଥିଅନ୍ତେ କୁଷ୍ଠରୋଗ ହୁଏ ତା ଅଙ୍ଗରେ
ବନ୍ଧୁବାନ୍ଧବରେ ନ ରହନ୍ତି ତା ସଙ୍ଗରେ ।
ଏମନ୍ତ କହିଣ ତପୀ ହୋଇଲେ ମଉନ
ଏଥୁଁ ଅନ୍ତେ ଯାହା ହେଲା ଶୁଣ ଦେଇମନ ।
ବୃଷଳୀର ପୁତ୍ର ଆଶା କରି ଆସିଥିଲା
ନାହିଁ କହିବାରୁ ମୁନି ସେଠାରେ ରହିଲା ।
ତାଙ୍କ କଥା କଣ୍ଠ ଓଷ୍ଠ ଶୁଖି ଗଲା ତାର
ମୁଖ ଟେକି କରି ନ ପାରିଲା ସେ ଉତ୍ତର ।
ଦଇବେ ସେ ସମୟରେ ଅପ୍ସରା ମେନକା
ସୁନ୍ଦର ବେଶ ହୋଇଣ ଯାଉଥିଲା ଏକା ।
ମୁନିଙ୍କର ଆଶ୍ରମ ତ ଥିଲା ସେ ପଥରେ
ଶୀଘ୍ର ଯାଇ ଉପସ୍ଥିତ ହେଲା ସେ ଠାବରେ ।
କ୍ରମେ ୨ ଆସି ଯହୁଁ ସନ୍ନିଧିରେ ହେଲା
ତପୀଙ୍କର ଦୃଷ୍ଟି ତାହା ଉପରେ ପଡ଼ିଲା ।
ଅମର ମଣ୍ଡଳ ସ୍ତ୍ରୀ ସେ ଅଟଇତ ସେହି
ଉପମା ଦେବାକୁ ତିନିପୁରେ କେହି ନାହିଁ ।
ତାର ଉରୁ ସ୍ତନ ଦେଖି ଋଷିଙ୍କର ମନ
ସ୍ଥିର ନ ହୋଇଣ କାମେ ହେଲା ଅଚେତନ ।
ବୀର୍ଯ୍ୟଧାର ସାଥେ ସାଥେ ସ୍ଖଳିତ ହୋଇଲା
ଗୋପିକା ଯେ ଋତୁ ସ୍ନାନ କରି ଯାଉଥିଲା ।
ସେ ଋଷି ରେତକୁ ଜଳ ସଙ୍ଗେ ପାନ କଲା
ତତକ୍ଷଣେ ତାର ଗର୍ଭ ଲକ୍ଷଣ ଦିଶିଲା ।

ତହୁଁ ସେ ମୁନିଙ୍କ ପାଦେ ପ୍ରଣତି ଜଣାଇ
ଆପଣା ପୁରେ ଗମନ କଲେ ନୃପମୂର୍ତ୍ତି ।
ଗୋଟି ୨ କରି ସବୁ ପତ୍ନିଙ୍କ ଆଗରେ
କହିଲେ ଯେ ଘଟିଥିଲା ଯେଉଁ ପ୍ରକାରେ ।
ଶୁଣି ନରପତି ଅତି ଆନନ୍ଦ ହୋଇଲେ
ପ୍ରିୟାକୁ ମଧୁର ଭାବେ ବଚନ ବୋଇଲେ ।
କହିଲେ ଆଗୋ ସୁନ୍ଦରୀ ଶୁଭକ୍ଷଣେ ଯେବେ
ଋଷିଙ୍କର ବୀର୍ଯ୍ୟ ପଡ଼ିଅଛି ତବ ଗର୍ଭେ ।
ତେଣୁ ତବସମ କେହି ନାହିଁ ଭାଗ୍ୟବତୀ
ନିଶ୍ଚୟ ଜାତ ହୋଇବ ଅପୂର୍ବ ସନ୍ତତି ।
ଯେ ହେତୁ କଶ୍ୟପ ମୁନି ତପିଙ୍କ ଶେଖର
ବିଷ୍ଣୁଙ୍କ ସମାନ ତାଙ୍କ ତେଜ ବଳୀୟାର ।
ତାହାଙ୍କ ବୀର୍ଯ୍ୟରୁ ଯେଉଁ ପୁତ୍ର ହେବ ଜାତ
ଶ୍ରୀ ବିଷ୍ଣୁ ସମାନ ସେହୁ ହେବ ବଳବନ୍ତ ।
ଅଶେଷ ଜନମ ତପଫଳରେ ସୁନ୍ଦରୀ
ଏମନ୍ତ ସନ୍ତାନ ନାରୀ ଗର୍ଭେ ପାରେ ଧରି ।
ସେ ପୁତ୍ର ନିମନ୍ତେ ଶତେ ପୁରୁଷ ପର୍ଯ୍ୟନ୍ତ
ବୈକୁଣ୍ଠ ପୁରେ ବସନ୍ତ ହୋଇ ଶୁଚିବନ୍ତ ।
ଜରାମୃତ୍ୟୁ ଆଦି ସେ ଠାବରେ ନ ବାଧଇ
ବିଷ୍ଣୁଙ୍କୁ ସେବା କରନ୍ତି ଦିନ ନ୍ୟନ୍ତ ସେହି ।
ଜାଣ ଆଗୋ ପତିବ୍ରତା ରମଣୀଙ୍କ ଶ୍ରେଷ୍ଠ
ସଂସାର କଷ୍ଟରୁ ମୁକ୍ତି ଲଭିବ ଅବଶ୍ୟ ।
ତୁମେ ଏବେ ସୁଚରିତ୍ର ବ୍ରାହ୍ମଣଙ୍କ ପାଶେ
ରତ୍ନ ଧନ ନେଇଥାଅ ମନର ସନ୍ତୋଷେ ।
ମୁହିଁ ଯାଉଅଛି ତପ କରିବା ନିମନ୍ତେ
ପୁତ୍ର ଜନ୍ମ କରି ତୁମ୍ଭେ ରହ ହର୍ଷ ଚିତ୍ତେ ।
ଜନ୍ମିଲେ ସନ୍ତାନ ଅର୍ପି ସାଧୁଙ୍କ ପସ୍ୱରେ
ମୋହ ନିକଟକୁ ଯିବ ଆନନ୍ଦ ମନରେ ।
ଏହିପରି ରମଣୀକୁ ଉପଦେଶ ଦେଇ
ଧନରତ୍ନ ଦାନ କଲେ ବ୍ରାହ୍ମଣଙ୍କୁ ରାଇ ।
ଇଷ୍ଟଦେବତାଙ୍କୁ ପୂଜାକରି ଆନନ୍ଦରେ
ନୃତ୍ୟ ଗୀତ କରାଇଲେ ନଗର ମଧ୍ୟରେ ।
ଦୁଇଲକ୍ଷ ଅଶ୍ୱ ଏକଲକ୍ଷ ମତ୍ତଗଜ
ବ୍ରାହ୍ମଣଙ୍କୁ ଦାନ ଦେଲେ କରାଇଣ ସଜ ।
ସହସ୍ରେକ ରଥ ପୁଣି ସହସ୍ରେ ଶକଟ
ଦେଲେ ସେ ରାଜନ ମନେ ନ ରଖି କପଟ ।

ଖାରଶତ ଗାଈ ତିନ ସହସ୍ର ବୃଷ
ଦାନକଲେ ବିପ୍ରବରେ ଦୁମିଳ ନରେଶ ।
ଯୋଖା ହୋଇଥିବା ତିନିଲକ୍ଷ ରାଜ ହଂସ
ଉତ୍ତମ ବ୍ରାହ୍ମଣେ ଦାନକଲେ ହୋଇ ତୋଷ
ପୁଣି ଲକ୍ଷେ ଘାରି ଲକ୍ଷେ ଗୁଆଙ୍କ ସହିତ
ଦାନକଲେ ଆନନ୍ଦରେ ହପ୍ରେ ନରନାଥ ।
ପୁଣି ଦୁଇଶତ ଦାସ ଦାସୀ ଦାନକଲେ
ତାଙ୍କ ସହିତରେ ଶହେ ଗୋଟି ଗ୍ରାମ ଦେଲେ
ବିବିଧ ପଦାର୍ଥମାନ ପୂର୍ଣ୍ଣଥିଲା ତହିଁ
ତାହା ସବୁ ଦାନକଲେ ସନ୍ତୋଷରେ ସାଇଁ ।
ଆଉରି କୋଟିଏ ଘର ତଣ୍ଡୁଳ ସଙ୍ଗରେ
ସୁନା ହୀରା ମଣି ଆଦି ଦେଲେ ନୃପବରେ ।
ଏହି ପରକାରେ ବହୁ ଧନରତ୍ନ ଦେଇ
ସଭିଙ୍କ ମନକୁ ତୋଷକଲେ ନରସାଇଁ ।
ଯେ ଯାହା ମାଗିଲେ ଆସି କରି ପ୍ରସାରଣ
ତାହାକୁ ଆନନ୍ଦେ ଦାନ କଲେ ନରଗଣ ।
ଏଥୁଅନ୍ତେ ଆନକଥା ଶୁଣ ମନ ଦେଇ
ଏକ ଶୁଦ୍ଧବନ୍ତ ଦ୍ୱିଜ ସନ୍ନିଧିକୁ ଯାଇ ।
ବହୁ ଧନରତ୍ନ ଦାନ କରିଲେ ତାହାଙ୍କୁ
ତଦନ୍ତରେ ବୋଇଲେ ଆପଣା ପ୍ରିୟାକୁ ।
ନାନାବିଧ ଅଳଙ୍କାର କରିଣ ମଣ୍ଡଣୀ
ମୂଲ୍ୟବାନ ପାଟବସ୍ତ୍ର ପିନ୍ଧାଇଲେ ପୁଣି ।
କରଧରି ଦ୍ୱିଜବର ପାଶକୁ ସେ ନେଇ ।
ବୋଇଲେ ମୋହର ବାକ୍ୟ ଶୁଣନ୍ତୁ ଗୋସାଇଁ
ଏ ରମଣୀ ହୀନ ଅଟେ ମୋର ପ୍ରିୟବଶ ।
କଶ୍ୟପଙ୍କ ବୀର୍ଯ୍ୟ ହୋଇଅଛୁ ଗର୍ଭବଶ ।
ଆପଣଙ୍କ ସୁଚରିତ ଜାଣି ଆଗୁଁ ମୁହିଁ
ମୋ ପ୍ରିୟାକୁ ସମର୍ପଣ କରୁଛି ଗୋସାଇଁ ।
ତପସ୍ୟା ନିମନ୍ତେ ଆଜ ଜରେ ମୁଁ ଗମନ
ତେଣୁ ତବ ପାଶେ ଦେଉଅଛି ନାରୀରତ୍ନ ।
ସନ୍ତାନ ଜନମ ହେଲେ ରଖାଇଣ ତାକୁ
ଏ ରମଣୀ ହୀନ ଯିବ ମୋହର ପାଶକୁ ।
ସେ ପର୍ଯ୍ୟନ୍ତ ଆପଣଙ୍କ ଅଧୀନରେ ରହି
ଦିନ ବିତାଇବ ଆହେ ବିପ୍ରଙ୍କର ସାଇଁ ।
ତା ଶୁଣି ବ୍ରାହ୍ମଣ ତାହା ସମ୍ମତ ହେଲେ
ଆପଣା ମାତା ସ୍ୱରୂପ ରାଣୀଙ୍କୁ ପାଳିଲେ ।

ଏହା କହି ସାର ପୁଣି ଦ୍ରୁମିଳ ରାଜନ
ସେ ବ୍ରାହ୍ମଣ କରେ ଅରପିଲେ ରାଜ୍ୟଧନ ।
ଅନ୍ତର ମଧ୍ୟେ ପ୍ରଭୁଙ୍କୁ ସୁମରଣା କରି
ବଦରିକା ଶ୍ରମେ ପ୍ରବେଶିଲେ ଦଣ୍ଡଧାରୀ ।
ମାସେ ଉପବାସେ ଚର୍ଣ୍ଣି ତପ ଆଚରିଲେ
ତଦନ୍ତେ ଗଙ୍ଗାନଦୀ କୂଳରେ ମିଳିଲେ ।
ସେ ଠାବରେ ଯୋଗବଳେ ତେଜିଲେ ଶରୀର
ବିଷ୍ଣୁ ଦୂତଗଣେ ଆସି ମିଳିଲେ ସତ୍ୱର ।
ଦିବ୍ୟ ବିମାନରେ ତାଙ୍କୁ ହରଷେ ବସାଇ
ବଇକୁଣ୍ଠ ଭୁବନରେ ସ୍ଥାନ ଦେଲେ ନେଇ ।
ବିଷ୍ଣୁଙ୍କର ଦାସ ହୋଇ ସେ ଗୋପ ରାଜନ
ସେବାକରି ଆନନ୍ଦରେ ବିତାଇଲେ ଦିନ ।
ଏଥିଅନ୍ତେ ଯାହାହେଲା ଶୁଣ ମନ ଦେଇ
ସ୍ୱାମୀଙ୍କର ମୃତ୍ୟୁ ବାର୍ତ୍ତା କଳାବତୀ ପାଇ ।
ଅନଳ ଜାଳିଣ ଝାସ ଦେବା ସମୟରେ
ବାରଣ କରିଲେ ବିପ୍ର ଆସିଣ ସେଠାରେ ।
ବୋଇଲେ ଗୋ ମାତ ଯାହା କରୁଅଛ ତୁମ୍ଭେ
ଉଚିତ ହେଉଛି କିବା କୁହ ମୋର ଆଗେ ।
ଶୋକଭରେ ଯେବେ ତୁମ୍ଭେ ତେଜିବ ଜୀବନ
ବାଳକ ହତ୍ୟା ଦୋଷରେ ଭାଗୀ ହେବା ଜାଣ ।
ଏପରି ସାନ୍ତ୍ୱନା ବାଣୀ କହି ଦ୍ୱିଜବର
କଳାବତୀକୁ ଘେନିଣ ଗଲେ ନିଜପୁର ।
ତାହାପରେ ବିପ୍ରପୁରେ ରହି କିଛୁଦିନ
ସେ ଗୋପ ସୁନ୍ଦରୀ ଜନ୍ମ କରିଲା ନନ୍ଦନ ।
ତପ୍ତ ସ୍ୱର୍ଣ୍ଣ ପ୍ରାୟ ଅଟେ ବଦନ ସୁଚାରୁ
ବ୍ରହ୍ମତେଜ ବଳେ ସେହୁ ଅତି ବଳୀୟାର ।

ସେ ଗ୍ରାମରେ ଯେତେ କୁଳାଙ୍ଗନା ମାନେ ଥିଲେ
ଶିଶୁ ଦରଶନ ଲାଗି ସକଳେ ଧାଇଁଲେ ।
ଦେଖିଲେ ସେ ପୁତ୍ର ଗୋଟି ଅତି ତେଜୋବନ୍ତ
ମଧ୍ୟାହ୍ନ ସୂର୍ଯ୍ୟ ତା ତେଜେ ହୋଇବ ନିନ୍ଦିତ ।
କନ୍ଦର୍ପଠାରୁ ଅଧିକ ହୋଇଛି ସୁନ୍ଦର
ମୁଖ ନିନ୍ଦା କରୁଅଛି ପୂର୍ଣ୍ଣ ସୁଧାକର
ଶରଦ ପଦ୍ମ ପରାୟେ ନୟନ ଯୁଗଳ
ଆରକ୍ତ ଅମ୍ବର କର ଦିଶଇ ସୁଢଳ ।
ପାଦରେ ଶୋଭିତ ଚକ୍ର ପଦ୍ମ ଅଛି ରହି
ହସ୍ତରେ ସେ ଊର୍ଦ୍ଧ୍ୱରେଖା ସ୍ପଷ୍ଟ ଯେ ଦିଶଇ ।
ସ୍ତନ୍ୟ ପାନ କରିବାକୁ ଜନନୀକୁ ଚାହିଁ
କ୍ରନ୍ଦନ କରଇ ପୁତ୍ର କୁଆଁ ରବ ଦେଇ ।
ତା ଦେଖି କାମିନୀମାନେ ଆନନ୍ଦ ହୋଇଲେ
କଲ୍ୟାଣ କରିଣ ଯେ ଯା ପୁରେ ଚାଲିଗଲେ ।
ରଖିଥିଲେ ଯେଉଁ ବିପ୍ରବର ଗୋପିକାକୁ
ଆନନ୍ଦ ହୋଇଲେ ଦେଖି ସନ୍ତାନ ମୁଖକୁ ।
ବନ୍ଧୁ ବାନ୍ଧବ ସଙ୍ଗତେ ଆସି ତା ନବର
ନୃତ୍ୟ ଗୀତ ଆରମ୍ଭିଲେ ଦେଖିଣ କୁମର ।
ଶୁକ୍ଳ ପକ୍ଷ ଶଶୀସମ ସେ କୁମରମଣି
ବଢ଼ିଲା ଦିନକୁ ଦିନ ଦେଖ ଦଇବଠାଣି ।
ସେ କୁମରଙ୍କୁ ବ୍ରାହ୍ମଣ ଜନନୀ ସଙ୍ଗତେ
ରଖିଲେ ଅତି ଆଦର କରି ବିଧିମତେ ।
ଦେଲେ ଧନ ଧାନ କ୍ଷେତ୍ର ଆହେ ସାଧୁଜନେ
ଅପୂର୍ବ ଚରିତ ଶୁଣ ଆନନ୍ଦିତ ମନେ ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ଉପବର୍ହଣଙ୍କର ମୃତ୍ୟୁ ଓ ଶୂଦ୍ରାଣୀ ଗର୍ଭରେ ଜନ୍ମ ହେବା ବିବରଣେ ନାମ ଚତୁର୍ବିଂଶୋ ଅଧ୍ୟାୟ

## ପଞ୍ଚବିଂଶ ଅଧ୍ୟାୟ

### ନାରଦଙ୍କର ଶାପମୋଚନ ଓ ପୂର୍ବ ଦେହ ପ୍ରାପ୍ତ

ଶୁଣନ୍ତୁ ବିବୁଧ ଜନେ ଅପୂର୍ବ ଚରିତ
କ୍ରମେ ପାଞ୍ଚ ବରଷର ହୋଇଲା ସେ ପୁତ୍ର ।
ଜାତିସ୍ମର ହେତୁ ଜ୍ଞାନ ହେଲା ତା ଅନ୍ତରେ
ପୂର୍ବମନ୍ତ୍ର ସ୍ମୃତି ଜାଗି ଉଠିଲା ହୃଦରେ ।

ହରି ନାମ ତାହାକର ସର୍ବଦା ବୁଲଇ
ନାଚି ୨ ଅଶ୍ରୁଜଳେ ସେହୁ ଭାସିଯାଇ ।
ଯେଉଁଠାରେ ହୁଏ ହରିନାମର କୀର୍ତ୍ତନ
ଦ୍ରୁତଗତିକରି ତହିଁ ମିଳଇ ବଦନ ।

ଆକର ସୁବର୍ଣ୍ଣ ପାଠ ହୁଏ ଯେଉଁଠାରେ
ଶୁଣିବା ପାଇଁକ ସୁତ ମିଳଇ ସେଠାରେ ।
ପୁଣି କେତେବେଳେ କରି ପ୍ରତିମା ଗଠନ
ଧୂଳିର ନୈବେଦ୍ୟ ଦେଇ କରଇ ପୂଜନ ।
ସେ କାଳରେ ଯବ ତାର ଜନନୀ ଡାକଇ
ଉତ୍ତର ମଧୁର ବାଣୀ କୁମର ବୋଲଇ ।
ଶୁଣମାତ ହରିପୂଜା କରିଛୁ ଏଠାରେ
ପୂଜା ସାରି ଯିବ ମୁହିଁ ଅବିଳମ୍ବେ ଘରେ ।
ଅନାବୃଷ୍ଟି କାଳେ ଜନ୍ମ ହୋଇଥିଲା ସେହୁ
ଜନମି ସଲିଳ ଦାନ କଲେ ହର୍ଷ ହୋଇ ।
ଏ ହେତୁ ନାରଦ ନାମ ରଖିଲା ସୂତ୍ରବ
ପରମ ବୈଷ୍ଣବ ସୂତ୍ର ଜାଣିଲେ ସଂସାର ।
ଆଉ ଏକ କଥା ସର୍ବେ ଶୁଣ ମନଦେଇ
ନାର ଶବ୍ଦେ ଜ୍ଞାନ ହୁଏ ଶାସ୍ତ୍ରେ ଅଛି କହି ।
ସକଳ ଶିଶୁଙ୍କୁ ଜ୍ଞାନ କରିବାରୁ ଦାନ
ନାରଦ ନାମ ତାହାର ବଟେ ସେ ଭୁବନ ।
ସୌନକ ବୋଇଲେ ବାରେ ଶୁଣ ମହାମତି
ଶୁଣିଲୁ ତୁମ୍ଭର ମୁଖୁଁ ଅପୂର୍ବ ଭାରତୀ ।
କଶ୍ୟପ କ ହେତୁ ଧରେ ନାରଦ ଆଖ୍ୟାନ
ପ୍ରକାଶ କରିଣ ତାହା କୁହ ମତିମାନ ।
ଶୁଣିଣ ସୌତି ବୋଇଲେ ଶୁଣ ତପୀବର
ନରନାମେ ମୁନି ଥିଲେ ଧର୍ମଙ୍କ କୁମର ।
କଶ୍ୟପ ମୁନିଙ୍କୁ ଅପୂର୍ବିକ ଦେଖି ସେହୁ
ପୁତ୍ର ଏକ ଅରପଣ କଲେ ଦୟା ବହି ।
ଏ ହେତୁ ନାରଦ ନାମ ହୋଇଲା ତାଙ୍କର
ଏହା ଶୁଣି ବୋଇଲେକ ସୌନକ ପ୍ରବର ।
ଶୂଦ୍ର-ଜନମ ପୂର୍ବରୁ ବ୍ରହ୍ମାଙ୍କ ତନୟ
ନାରଦ ଆଖ୍ୟାନ କମ୍ପା ଧରିଲେକ କୁହ ।
ତାହାଙ୍କ ବଚନ ସୌତି ଶୁଣିଣ କର୍ଣ୍ଣରେ
ବୋଇଲେ ଆନନ୍ଦ ମନେ ତାହାଙ୍କ ଆଗରେ ।
କଲ୍ପାନ୍ତରେ ବିଧାତାଙ୍କ କଣ୍ଠଦେଶ ଦେଇ
ବହୁ ସଂଖ୍ୟା ନର ଜନ୍ମ ହୋଇଲେକ ମହୀ ।
ବିଧାତାଙ୍କ କଣ୍ଠ ଦେଶୁ ହୋଇବାରୁ ଜାତ
ନାରଦ ନାମ ତାଙ୍କର ହୋଇଲା ବିଖ୍ୟାତ ।
ଏହି ପରକାରେ ପୁତ୍ର ଜନ୍ମ ବିବରଣ
ଏହାପରେ ଯହା ହେଲା ଶୁଣ ତପୀଗଣ ।

ଶୁକ୍ଳ ପକ୍ଷ ଚନ୍ଦ୍ର ସମ ସେ କୁମର ମଣି
ଦିନକୁ ଦିନ ବଢ଼ିଲା ବୟସରେ ପୁଣି ।
ପାଞ୍ଚ ବରଷ ବୟସ ହେବାରୁ ସୁତର
ଏକଦା [illegible] ସୁତ ମିଳିଲେ ସତ୍ୱର ।
ନାରଦଙ୍କ ସଙ୍ଗତରେ ସମସ୍ତେ ସେହୁ
ପାଞ୍ଚ ବରଷରୁ କାହୁ ଅଧିକ ନୁହଇ ।
ତାଙ୍କୁ ଦେଖି ଦ୍ୱିଜବର ଆନନ୍ଦ ହୋଇଲେ
ଭକ୍ତିଭରେ ଯଥାବିଧି ସନ୍ମାନ କଲେ ।
ବସିବାକୁ ଦେଲେ ତାଙ୍କୁ ଉତ୍ତମ ଆସନ
ତା ଦେଖି ବାଳକ ଗଣେ ହେଲେ ତୋଷମନ
ସୁଖେ ବସି ପଥ ଶ୍ରମ ନିବାରଣ କରି
ଦିଶିଲେ ଦେହକୁ ଯେହ୍ନେ ମାରତଣ୍ଡ ପରି ।
ବ୍ରହ୍ମ ତେଜରେ ଆବୃତ ଅଟେ ତାଙ୍କ କାୟ
ଦେଖା ଯାଉଥିଲେ ଅତିଶୟ ତେଜୋମୟ ।
ଏ ଅନ୍ତରେ ଗୃହଦ୍ୱିଜ ଫଳ ମୂଳ ଆଣି
ଦେଲେ ପିଇବା ନିମନ୍ତେ ତାଙ୍କୁ ସ୍ୱାଦୁପାଣି ।
ସେ ଚାରି ବ୍ରାହ୍ମଣ ଦେଖି ମହା ଆନନ୍ଦରେ
ଭୋଜନ କଲେ ଫଳ ମୂଳ ସେଠାବରେ
ତାଙ୍କଠାରୁ ଯାହକଛୁ ବଳକା ଉଚ୍ଛିଷ୍ଟ
ଗୋପୀକା ନନ୍ଦନ ସବୁ ବସିଣ ଭୁଞ୍ଜିଲା ।
ତାହାର ଭକ୍ତି ଦେଖିଣ ଚତୁର୍ଥ ବ୍ରାହ୍ମଣ
ଆନନ୍ଦେ ପିଠିକି ତାର ଆଉଁସିଣ ପୁଣ ।
ଶ୍ରୀକୃଷ୍ଣ ମନ୍ତ୍ର ତାହାର କର୍ଣ୍ଣେ କହି ଦେଲେ
ତଦପରେ ପୂଜାବିଧାନ ବତାଇଲେ ।
ମାତାର ଆଜ୍ଞାରେ ସେହୁ ବାଳକ ତାହାଙ୍କୁ
ସେବା କରିଣ ରହିଲା ପ୍ରକାଶି ଭକ୍ତିକୁ ।
ଏଥୁଅନ୍ତେ ଦିନେ ନିଶାକାଳେ କଳାବତୀ
ସ୍ନାନ କରିବାକୁ ମାର୍ଗେ ଯାଉଥିଲେ ସତୀ ।
କାଳ ସର୍ପ ଦଂଶିବାରୁ ତତ୍ତ ସେହିଠାରେ
ହରିଙ୍କୁ ସ୍ମରଣ କରି ମାନସ ମଧ୍ୟରେ ।
ଜୀବନ ତେଜିବା ମାତ୍ରେ ଆସି ବିଷ୍ଣୁଦୂତେ
ବିମାନେ ବସାଇ ନେଇ ଗଲେକ ତୁରିତେ ।
ବୈକୁଣ୍ଠ ପୁରେ ମେଳଣ ତା ପତି ପାଶରେ
ରଖାଇଲେ ପୁଣି ନାରାୟଣଙ୍କ ସେବାରେ ।
ପ୍ରଭାତ ହୁଅନ୍ତେ ତା ର ପୁତ୍ର ଏକା ହୋଇ
ମାତାର ଗୁଣ ସୁମରି କାନ୍ଦିଲା ତୁହାଇ ।

ତାପରେ ବ୍ରାହ୍ମଣଙ୍କର ସଙ୍ଗେ ସାଥି ହେଲ
ପୂର୍ବେ ଥିବା ଦିବସରୁ ବାହାରିଣ ଗଲ ।
ତାହାକୁ ଦେଖି ବ୍ରାହ୍ମଣେ କୃପା ବଶମନେ
ବ୍ରହ୍ମମନ୍ତ୍ର ତତ୍ତ୍ୱଜ୍ଞାନ ଦେଇ ଏକ ସ୍ଥାନେ ।
ରଖାଇ ଆପଣା ବେଶେ ସେଠୁ ଚଳିଗଲେ
ବାଳକର କଥା ଶୁଣ କହୁଅଛୁ ଭଲେ ।
ମନୋହର ଗଙ୍ଗାନଦୀ ତୀରକୁ ସେ ଯାଇ
ବିପ୍ରେ ଦେଇଥିବା ବିଷ୍ଣୁମନ୍ତ୍ର ମନେଧ୍ୟାଇ ।
ପବିତ୍ର ଜାହ୍ନବୀ ଜଳେ ସ୍ନାନ ବିଧି ସାରି
ଜପକଲ ଆନନ୍ଦରେ ବୋଲି ହରିହରି ।
କ୍ଷୁଧା ତୃଷା ଆଦି ତାକୁ ନ ଲାଗିଲ ଆଉ
ପ୍ରସନ୍ନ ହେବାରୁ ଲକ୍ଷ୍ମୀପତି ମହାବାହୁ ।
ମହାଘୋର ଅରଣ୍ୟରେ ଅଶ୍ୱଥର ମୂଳେ
ଯୋଗାସନ କରି ତହିଁ ବସିଣ ନିଶ୍ଚଳେ ।
ଅନେକ ସମୟ ସେହି ସ୍ଥାନେ କଟାଇଲ
କେବଳ ତପସ୍ୟା କରିବାରେ ଚିତ୍ତ ଦେଲ ।
ଏହା ଶୁଣି ସଜନକ ଭକତି ଭାବରେ
ସଇତ ମୁନିଙ୍କୁ ପଚାରିଲେ ସେ କାଳରେ ।
କେମନ୍ତ ଏକଇ କଥା ପୁଚ୍ଛି କହିଁ ମୁହିଁ
ଦୟାକରି ତା ଉତ୍ତର ଦିଅନ୍ତୁ ବତାଇ ।
ବାଳକକୁ ଯେଉଁମନ୍ତ୍ର ଦ୍ୱିଜେ ଅରପିଲେ
ଦୟା କରି ତାହା ଆମ୍ଭ ଆଗେ କୁହ ଭଲେ ।
ଶୁଣିବା ସାନନ୍ଦ ମନରେ ବୋଇଲେ କ ସୌତି
କହିବା ସେ ମନ୍ତ୍ର ଶୁଣ ସ୍ଥିର କରି ମତି ।
ଯେ କାଳରେ ଦୟାକର ଶ୍ରୀକୃଷ୍ଣ ଧାତାଙ୍କୁ
ଦେଇଥିଲେ ଗୁପତରେ ସେ ମହା ମନ୍ତ୍ରକୁ ।
ଦ୍ୱାବଂଶତି ଅକ୍ଷରଟି ଅଛଇ ତହିଁରେ
ଦୁର୍ଲ୍ଲଭ ଅଟଇ ତାହା ଦେବଙ୍କ ପକ୍ଷରେ ।
ବ୍ରହ୍ମାକାଳେ କୁମରଙ୍କୁ ଦେଲେ ଦୟାବନ୍ତ
କୁମାର ଗୋପ ଶିଶୁର ଆଗେ ଦେଲେ କହି ।
ତାହାର ସ୍ୱରୂପ ଏବେ ଶୁଣ ମୁନିବର
ନମସ୍ତେ ଶ୍ରୀ ଭଗବାନ ରାସ ଅଧୀଶ୍ୱର ।
ଶ୍ରୀକୃଷ୍ଣ ଗୋପିକା କାନ୍ତ ଏହି ପରକାରେ
ଗଠିତ ହୋଇଛି ମନ୍ତ୍ର ବାଇଶି ଅକ୍ଷରେ ।
ଫଳପ୍ରଦ ଅଟଇ ସେ କଳ୍ପବୃକ୍ଷ ପରି
ପ୍ରମାଦ ନ ପଡ଼େ ଯାକୁ ଜପିଲେ କାହାରି ।

ଆଗୁଁ କହିଅଛୁ ମହା ପୁରୁଷ ସ୍ତୋତ୍ରକୁ
ଏମନ୍ତ ଭକ୍ତିରେ ପାଠ କରିବ ତାହାକୁ ।
ତାପରେ କବଚ ଆଦି କରିବ ପଠନ
ସେହିପରକାରେ ଅଟେ ଏ ମନ୍ତ୍ରର ଧ୍ୟାନ ।
ମୁଖ୍ୟ ସାମବେଦରେ ସେ ହୋଇଅଛି ଉକ୍ତ
ପଠନ ମାତ୍ରକେ ଜୀବ ହୋଇଯାଏ ମୁକ୍ତ ।
କୋଟି ସୂର୍ଯ୍ୟ ତେଜ ମଣ୍ଡଳରେ ଯାହାଙ୍କର
ସ୍ୱରୂପ ପ୍ରକାଶ ପାଏ ଗୋଲକ ଧାମର ।
ଧ୍ୟାନଯୋଗେ ଯୋଗୀମାନେ ଦିବସ ରଜନୀ
ଯାହାଙ୍କ ନାମକୁ ଜପ କରୁଛନ୍ତି ପୁଣି
ଆବର ଦେବତା ସିଦ୍ଧ ବଇଷ୍ଣବମାନେ
ସଦା ଚିନ୍ତା କରୁଛନ୍ତି ବସି ଏକ ମନେ ।
ଅତ୍ୟନ୍ତ ସୁନ୍ଦର ମନୋହର ଦିବ୍ୟମୂର୍ତ୍ତି
ତରୁଣ ଜଳଦ ସମ ଶୋଭାପାଏ ଜ୍ୟୋତି ।
ପୂର୍ଣ୍ଣ ସୁଧାକର ଜିଣି ଶ୍ରୀମୁଖ ମଣ୍ଡଳ
ଶରଦ କମଳ ପରି ନୟନ ଯୁଗଳ ।
ସୁରଙ୍ଗ ଅଧର ଯୁଗ କମନୀୟ ଦିଶେ
ସାକ୍ଷାତେ ପାଚିଲା ବିମ୍ବଫଳ ଅବା କ ସେ ?
ମୁକୁତାର ମାଳା ଯେହ୍ନେ ଶୁଭ୍ର ତେଜବେଶ
ସୁନ୍ଦର ଦିଶେ ଯେମନ୍ତ ଦୁଇ ଦନ୍ତଶ୍ରେଣୀ ।
ବେନଭୁଜେ କଟିତଟେ ଧୃତ ପୀତ ବାସ
ରତ୍ନ ସୁବର୍ଣ୍ଣ ଭୂଷଣ ଶଖରେ ପ୍ରକାଶ ।
କନକ କୁଣ୍ଡଳ ବେନି କର୍ଣ୍ଣଦେଶେ ସାଜେ
କାରଣ ଜଳରେ ଖଣ୍ଡ ମଣ୍ଡଳ ବିରାଜେ ।
ମୟୂର ପୁଚ୍ଛରେ ଚୂଡ଼ା ଦିଶଇ ଶୋଭନ
କଣ୍ଠ ଦେଶରେ ଝୁଲଇ ରତ୍ନ ହାର ମାନ ।
ପୁଣି ବକ୍ଷସ୍ଥଳେ କଉସ୍ତୁଭ ମଣି ଶୋଭା
ଯେମନ୍ତେ ସରସୀ ମଧ୍ୟେ ନୀଳୋତ୍ପଳ ପ୍ରଭା ।
ସୁନ୍ଦରୀ ଷୋଡ଼ଶୀ ଗୋପାଙ୍ଗନାଙ୍କ ସଙ୍ଗରେ
ଆସକ୍ତ ହୋଇଣ ଥାନ୍ତି ନାନାଦି କ୍ରୀଡ଼ାରେ ।
ବ୍ରହ୍ମା ବିଷ୍ଣୁ ଶିବ ଆଦି ଦେବଗଣଙ୍କର
ପରମ ପୂଜିତ ପ୍ରଭୁ ଶଙ୍ଖ ଚକ୍ରଧର ।
କିଶୋର ବୟସ ରାଧାକାନ୍ତ ଶାନ୍ତରୂପ
ନିର୍ଲିପ୍ତ ବିକାର ଶୂନ୍ୟ ନିର୍ଗୁଣ ସ୍ୱରୂପ ।
ଏମନ୍ତ ଯେ ପ୍ରଭୁ ତାଙ୍କୁ କରୁଅଛି ଧ୍ୟାନ
ଦୟାକରି କରନ୍ତୁ ମୋ ମନବାଞ୍ଛା ପୂର୍ଣ୍ଣ ।

ଆହେ ଶଉନକ ମୁନି ଏହି ପରକାରେ
ଧ୍ୟାନମାନ ଲେଖାଅଛୁ ମନ୍ତ୍ର ସକାଶରେ ।
ଆବର କବଚ ସ୍ତୋତ୍ର ଅଛୁ ମଧ୍ୟ ତହିଁ
ପଠନ କଲେ ନିଶ୍ଚେ ମଙ୍ଗଳହୁଅଇ ।
ଏବେ ସେ ବାଳକ ଯାହା କଲା ତଦନ୍ତରେ
ତାହା କହୁଅଛୁ ଶୁଣ ଏକାନ୍ତ ଚିତ୍ତେ ।
ଦିବ୍ୟ ସହସ୍ର ବରଷ ନିରାହାରେ ରହି
ତପ ଆଚରଣେ କୃଶ କଲା ନିଜ ଦେହି ।
ତାହାପରେ ସେହି ମନ୍ତ୍ର ସିଦ୍ଧ ହୋଇବାରୁ
ଅତି ତେଜୋବନ୍ତ ହେଲା ତାହା ପ୍ରଭାବରୁ ।
ଧ୍ୟାନ ମାର୍ଗେ ଦିବ୍ୟଲୋକ କଲା ଦରଶନ
ଅଛନ୍ତି ତହିଁରେ ଏକ ବାଳକ ରତନ ।
ବିଜେ କରିଛନ୍ତି ରତ୍ନ ସିଂହାସନ ଉପରେ
ରତନ ଭୂଷଣ ମାନ ଶୋଭେ ତା ଅଙ୍ଗରେ ।
ଶ୍ୟାମଳ ବରନ ତନୁ କିଶୋର ବୟସ
ଗୋପବାଳ ବେଶଧାରୀ ସ୍ମିତ ବରହାସ ।
ଗୋପାଳ ଗୋପରମଣୀ ଗଣରେ ବେଷ୍ଟିତ
ପୀତବାସେ କଟୀଦେଶ ଦିଶଇ ଶୋଭିତ ।
ଜାନୁ ପର୍ଯ୍ୟନ୍ତେ ବେନି ବାହୁ ଲମ୍ବମାନ
ବେନି ହସ୍ତରେ ମୁରଲୀ ଦିଶେ ଶୋଭାବନ ।
ବ୍ରହ୍ମା ବିଷ୍ଣୁ ଶିବ ପୁଣି ଦେବ ଦେବୀଙ୍କରେ
ସେବିତ ଅଟନ୍ତି ସବୁକାଳେ ସର୍ବଠାରେ ।
ସେ ପରମ ପୁରୁଷଙ୍କୁ ବିକ୍ଷିଣ ନୟନେ
ନିରେଖି ରହିଲା ଗୋପସୁତ ଏକଧ୍ୟାନେ ।
ଦିବ୍ୟତେଜ ହେତୁ ସେହି ମୂର୍ତ୍ତି ନ ପାଇଲା
ମନ ମଧ୍ୟେ ବିଷାଦ ତାର ଜନମିଲା ।
ଅତି ଉଚ୍ଚରେ ରୋଦନ କରିଲା କୁମର
ସୁନ୍ଦର ରୂପରେ ଭୁଲିବାରୁ ମନ ତାର ।
ସେହିକାଳେ ଆକାଶରୁ ଶୁଭିଲା ଏ ବାଣୀ
କାହିଁପାଇଁ କାନ୍ଦୁଅଛୁ ରେ କୁମର ମଣି ।

ସେବଣ ରୂପକୁ ତୁମ୍ଭ କଲୁ ଦର୍ଶନ
ଆଉ ଦେଖି ନ ପାରିବୁ ତାହା କଦାଚନ ।
ଦୃଢ଼ନାହିଁ ଚିତ୍ତ ଯେଉଁ ଯୋଗୀ ମାନଙ୍କର
ଦର୍ଶନ ନ ମିଳନ୍ତି ଏହି ରୂପକୁ ନେତ୍ରର ।
ତୋର ନିଜ କଳେବର ତେଜି ଯେତେବେଳେ
ପାଇବୁ ଦିବ୍ୟ ଶରୀର ଜାଣ ସେହିକାଳେ ।
ଆମ୍ଭର ଏ ରୂପ ପୁଣି ଦର୍ଶନ କରିବୁ
ଜନମ ମରଣ ତେଜି ସୁଖରେ ରହିବୁ ।
ଏହିରୂପେ ସତ୍ୟବ୍ରତ ମାତାଙ୍କୁ ବାକ୍ୟ
ଶୁଣି ଆନନ୍ଦ ହୋଇ ଗୋପର ବାଳକ ।
ସେଠାରେ ଅନେକ କାଳ ପୁଣି ତପ କଲା
ଶେଷରେ ଯାଇଣ ନିଜ ପ୍ରାଣ ବିସର୍ଜିଲା ।
ସେତେବେଳେ ଶ୍ରୀକୃଷ୍ଣଙ୍କୁ କରୁଥିଲା ଧ୍ୟାନ
ସ୍ୱର୍ଗରେ ଦୁନ୍ଦୁଭି ବଜାଇଲେ ଦେବଗଣ ।
ଆନନ୍ଦେ ତାହା ଉପରେ ପୁଷ୍ପ ବରଷିଲେ
ଏ ରୂପେ ନାରଦ ପିତୃ ଶାପୁଁ ମୁକ୍ତହେଲେ ।
ବ୍ରହ୍ମ ଶରୀରରେ ଯାଇଁ ହୋଇଲେ ବିଲୀନ
ନିତ୍ୟ ହୋଇଲେ ତେଜି ସେ ମର୍ତ୍ତ୍ୟ ଭୁବନ
କାଳେ ପୁଣି ଉଦ୍ଭବିତ ହୋଇଲେକ ତହିଁ
ଏମନ୍ତ କୃଷ୍ଣ ଭକ୍ତିରେ ମହିମା ଅଟଇ ।
ନିତ୍ୟ ଦେହମାନେ ନିଜ ଇଚ୍ଛା ଅନୁସାରେ
ଦୃଶ୍ୟ ବା ଅଦୃଶ୍ୟ ହୋଇ ପାରନ୍ତି ସୁଖରେ ।
ଆହେ ଶଉନକ ମୁନି ଶୁଣ ମନଦେଇ
ବିଷ୍ଣୁ ଭକ୍ତ ମଧ୍ୟେ ସେହୁ ପ୍ରଧାନ ଅଟଇ ।
ଜରା ମୃତ୍ୟୁ ବ୍ୟାଧି ଆଦି ନ ଲଗଇ ତାରେ
ଦେବତାମାନେ ସମ୍ମାନ କରନ୍ତି ତାହାରେ ।
ଅଧମ କ୍ଷେତ୍ରମୋହନ ବୋଲେ ଯୋଡ଼ି କର
ସେ ହରି ଭକ୍ତଙ୍କ ରେଣୁ ପଡ଼ୁ ମମ ଶିର ।

---

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନାରଦଙ୍କର ପୂର୍ବ ଦେହପ୍ରାପ୍ତି ବିବରଣେ
ନାମ ପଞ୍ଚବିଂଶୋଽଧ୍ୟାୟଃ ।

# ଷଡ୍‌ବିଂଶୋ ଅଧ୍ୟାୟ

## ଧାତାଙ୍କଠାରୁ ଭିନ୍ନ ଭିନ୍ନ ମୁନିମାନଙ୍କର ଉତ୍ପତ୍ତି

ଶୁଣ ଆହେ ସୁଜ୍ଞଜନ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ଶଉନକଙ୍କ ମୁଖରୁ ଏବାଣୀ ସନ୍ତୁଷ୍ଟ
ବୋଇଲେ ଶୁଣନ୍ତୁ ବାରେ ଅପୂର୍ବ ଭାରତୀ ।
ପୁଣି କେତେ କାଳ ଅନ୍ତେ ବିଧାତାଙ୍କ ଚିତ୍ତ
ସୃଷ୍ଟି କରିବା ନିମନ୍ତେ ହେଲା ପ୍ରକଳ୍ପ ।
ତେଣୁ ତାଙ୍କ କଣ୍ଠ ଦେଶୁ ଜନ୍ମିଲେ ନନ୍ଦନ
ମରୀଚ, ମିଶ୍ର, ନାରଦ ଆଦି ଷଡ଼ଜଣ ।
କାଳ ସୂର୍ଯ୍ୟ ସମ ଆଭା ତାଙ୍କର ଦିଶଇ
ନାରଦ ସବୁଙ୍କ ପରେ ଶୋଭା ବଳଇ ।
ଧାତାଙ୍କର ନାମ ଯେଣୁ ଅଟଇ ନାରଦ
ତେଣୁ ସେ ପୁତ୍ରର ନାମ ହେଲେ ସେ ନାରଦ
ପୁଣି ଧାତାଙ୍କ ମନରୁ ହେଲେ ଯେଉଁ ସୁତ
ପ୍ରଚେଷ୍ଟା ବୋଲିଣ ନାମ ଦେଲେ ଲୋକନାଥ ।
ଦକ୍ଷ ପାଦୁଷ୍ଠରୁ ଜାତ ହେବା ପୁତ୍ରଙ୍କର
ଦକ୍ଷ ବୋଲିକରି ନାମ ହୋଇଲା ସତ୍ୱର ।
ସକଳ କାର୍ଯ୍ୟରେ ଯେଣୁ ଦକ୍ଷ ସେ ଅଟଇ
ଦକ୍ଷ ନାମ ତିନିପୁରେ ବ୍ୟାପିଗଲା ତହିଁ ।
କର୍ଦ୍ଦମ ଶବ୍ଦର ଅର୍ଥ ଛାୟା ବୋଲିକରି
ଉଲ୍ଲେଖ କରିଅଛନ୍ତି ବେଦେ କୃଷ୍ଣଧାମ ।
ସେ ପୁତ୍ର ଧାତାଙ୍କ ଛାୟା ମଧ୍ୟରୁ ଜନ୍ମନ୍ତେ
କର୍ଦ୍ଦମ ନାମ ଦେଲେକ ଧାତା ତୋଷ ଚିତ୍ତେ ।
ତେଜର ଅନ୍ୟ ନାମ ଯେ ମରୀଚି ଅଟଇ
ସେ ହେତୁ ତେଜସ୍ୱୀ ପୁତ୍ର ଦେଲେ ଲୋକସାଇଁ
ତାପରେ ଆନ ଯେ ସୁତ ହୋଇଲା ସମ୍ଭୂତ
କ୍ରତୁ ନାମ ତାର ହେଲା ତ୍ରିପୁରେ ବିଖ୍ୟାତ ।
ପ୍ରଧାନ ଅଙ୍ଗ ଯେ ମୁଖ ଅଟଇ ତହିଁରୁ
ଉତ୍ପନ୍ନ ହୋଇଲେ ଯେଉଁ ପୁତ୍ର ଅତିସ୍ୱରୁ ।
ମହାତେଜୋବନ୍ତ ସେହୁ ଦେଖା ଯାଉଥିଲେ
ଭଗ ବୋଲି ତେଜକୁ ତ ବୋଲନ୍ତି ସକଳେ
ସେ ହେତୁ ଅଙ୍ଗିରା ନାମ ଦେଲେ ଯେ ସୁତର
ଏହାପରେ ଆନଗାଥା ଶୁଣ ସୁଜ୍ଞନର ।
ପୁଣି ଅତି ତେଜଶୀଳ ଅଟଇଟି ଯେହୁଁ
ଭୃଗୁ ବୋଲିକରି ନାମ ପ୍ରବର୍ତ୍ତିଲ ତହୁଁ ।

ଏଣୁ ତେଜୋବାନ ସୁତ ହୋଇବାରୁ ଜାତ
ଭୃଗୁ ନାମ ଦେଲେ ଆନନ୍ଦରେ ଲୋକତାତ ।
ଆଉର ଯେଉଁ ନନ୍ଦନ ହୋଇଲା ଉତ୍ପନ୍ନ
ଅରୁଣ ନାମ ତାହାର ଦେଲେ ଲୋକମାନ୍ୟ ।
ପୁନଶ୍ଚ ଜାତ ହେବାରୁ ଏକଇ କୁମର
ହଂସୀ ବୋଲି ତାହାନାମ ଦେଲେ ବେଦବର ।
ଆପଣାର ଯୋଗବଳେ ପରମହଂସକୁ
ଦରଶନ କରି ତୋଷ ହୋଇଲେ ମନକୁ ।
ତାହାପରେ ଯେଉଁ ସୁତ ସମ୍ଭୂତ ହୋଇଲା ।
ଅତି ଶାନ୍ତ ଶିଷ୍ଟପଣ ତାର ଦେଖାଗଲା ।
ତେଣୁ ବ୍ରହ୍ମର କରିଣ ସାବିତ୍ରୀ ରମଣ
ବଶିଷ୍ଠ ତାହାର ନାମ କଲେ ବଖାଣ ।
ସେ ପୁତ୍ର ସଦା ସର୍ବଦା ତପେ ରତ ହୋଇ
ପଞ୍ଚଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲାଇଲେ ସେହି ।
ପୁଲ ଶବ୍ଦର ଅର୍ଥ ଅଟେ ତପ ଜାଣି
ତପସ୍ୱୀଙ୍କ ମଧ୍ୟେ ସାର ହେଲା ଯେ ନନ୍ଦନ ।
ତାହାର ନାମ ପୁଲସ୍ତ୍ୟ ଦେଲେ ପିତାମହ
ତଦପରେ ଆନଗାଥା ଶୁଣ ଋଷିଶ୍ରେଷ୍ଠ ।
ବ୍ରହ୍ମାଙ୍କଠାରେ ଯେ ସୁତ କରିଲା ଉତପତ
ଅତ୍ରି ନାମ ତାର ବାଛିଦେଲେ ଲୋକପତ ।
ସେ ପୁତ୍ର ମସ୍ତକଦେଶେ ଅନଳ ସମାନ
ପଞ୍ଚ ଗୋଟି ଜଟା ଦିଶୁଥିଲା ଶୋଭାବନ ।
ତପସ୍ୟା ତେଜରୁ ସେହି ଜନମି ଥିବାରୁ
ପଞ୍ଚଶିଖା ନାମ ତାକୁ ଦେଲେ ଲୋକଗୁରୁ ।
ମରୁ ଦ୍ୱୀପ ମଧ୍ୟେ ସେହୁ ପୁତ୍ର ଜନମରେ
ତପ କରିଥିଲେ ଲୟ ଲଗାଇ ବ୍ରହ୍ମରେ ।
ତେଣୁ ଅନ୍ତରଆତ୍ମା ନାମ ତାହାଙ୍କର
ଦେଲେ ରତ୍ନାକର ହୃଦପଦ୍ମେ ବେଦବର ।
ଆଉର ଋଷି ଶେଖର ଅଟଇ ଯେ ସୁତ
ତର୍କ ବିତର୍କରେ ଅଟେ ଯେ ମହା ପଣ୍ଡିତ ।
ତାହାଙ୍କୁ ଦେଖିଣ ଧାତା କୁପତ ହୋଇଲେ
ବୋଢୁ ବୋଲି ତାର ନାମ ବାଛି୨ ଦେଲେ ।
ଏଥୁଅନ୍ତେ ହେଲା ଯେଉଁ ଅନ୍ୟତମ ସୁତ
ତପସ୍ୟା ବଳରେ ଦିଶୁଥାଇ ଦୀପ୍ତିମନ୍ତ ।

ରୁଦ ଶବଦରୁ ଯାହି ଅର୍ଥ ତ ଦୁଃଖଯେ
ସେ ହେଉଛନ୍ତି ରୁଦ୍ର ନାମ ଦେଲେ ଧାତା ଙ୍କ
ତା ପରେ ସନୋନ୍ଦ ବ୍ରହ୍ମାଙ୍କ ନେତ୍ରନରୁ ଜାତ
କ୍ରମେ ହୋଇଥିଲେ ଯେଉଁ ଏଗାରଟି ସୂତ ।
ସେ ବନୁ ଜନ୍ମ ହେବାରୁ ରୁଦ୍ର ନାମ ପାଇ
କ୍ରୋଧେ ହେଲେ କୋପକାଳେ ହେବାରୁଟି ଯେଣୁ
ସନ୍ଦେହ ଚିତ୍ତରେ ଏବ୍ରକାଳେ ସଉନକ
ବନପୂରେ ପଚାରିଲେ ସଉତିଙ୍କୁ ବାକ୍ୟ ।
ଶୁନ ବନେନ ସନ୍ତୋଷ ଆହେ ମୁନିବର
ମାତ୍ର ଗୋଟିଏ କଥାରେ ସନ୍ଦେହ ମୋହର ।
ପଚାରୁଛି ଏକ କଥା ଶୁଣ ଦେଇ ମନ
ଶୁଣିଛି ମୁଁ ରୁଦ୍ରଙ୍କର ନାମ ପଞ୍ଚାନନ ।
ସକଳ ଦେବଙ୍କ ପରେ ଅଟନ୍ତି ସେ ସାର
ଯୋଗ ମାୟା ଇନ୍ଦ୍ରଚନ୍ଦ୍ର ପାଶରେ ତାଙ୍କର ।
ପୁଣି ସୌତିଙ୍କୁ ଅନାଇ ସୌନକ ବୋଇଲେ
ଯେଉଁ ରୁଦ୍ରଙ୍କର କଥା ଏଠାରେ କହିଲେ ।
ଏ ରୁଦ୍ରକ ଏକାଦଶ ରୁଦ୍ରଙ୍କ ସଙ୍ଗର
ତାହା ବିସ୍ତାରଣ ବାରେ କହ ତପୀବର ।
କି ଅବା ଅନ୍ୟ କେଉଁ ରୁଦ୍ର ସେ ଅଟନ୍ତି
ଶୁଣିବା ପାଇଁକି ଆମ୍ଭ ବଳଅଛୁ ମତି ।
ସଉତି କହିଲେ ଯେବେ ପଚାରିଲ ମୋତେ
ବିସ୍ତାରି କହୁଛି ତାହା ଶୁଣ ସୁ ଚିତ୍ତରେ ।
ସତ୍ତ୍ୱ ଗୁଣରେ ଯେ ବିଷ୍ଣୁ ପାଳନ କରନ୍ତି
ରଜୋଗୁଣେ ଧାତା ପୁଣି ସୃଷ୍ଟି ତିଆରନ୍ତି ।
ତମୋଗୁଣବନ୍ତ ଯେତେ ରୁଦ୍ରମାନେ ଜାଣ
ମହାଭୟଙ୍କର ତାଙ୍କ ରୂପଟି ପ୍ରମାଣ ।
ଶଙ୍କରଙ୍କ ଅଂଶୁଁ ଯେଉଁ ରୁଦ୍ର ହେଲେ ଜାତ
କାଳାଗ୍ନି ରୁଦ୍ର ବୋଲନ୍ତି ତାଙ୍କୁ ବିଜଗତ ।
ଶୁଦ୍ଧ ସତ୍ତ୍ୱଗୁଣ ମୟ ଯୋଗମାୟା ପତି
ଏହି ଏକାଦଶ ମଧ୍ୟୁ ଭିନ୍ନ ସେ ଅଟନ୍ତି ।
ସଂହାରକ ବୋଲି ତାଙ୍କୁ ନ ଜାଣିବା ନର
କୃଷ୍ଣ ବୃଥାରେ ଶୁଣ ଆହେ ତପୀବର ।
ଶ୍ରୀକୃଷ୍ଣଙ୍କ କଳା ଯେଣୁ ବିଷ୍ଣୁ ସଦାଶିବ
ଜାତ ହୋଇଛନ୍ତି ଲଭି ସତ୍ୟ ଗୁଣ ସବ ।
ରୁଦ୍ରଙ୍କ ଜନମ ଗାଥା ମୁଣି ସମୟରେ
କହୁଛି ପ୍ରକାଶ କର ଯତନେ ସୁଚିତ୍ତରେ ।
ଏବେ କଥା ଆଉ ଅଛି ମନେ ଯେବା ହେଲ
ଶୁଣୁଅଛୁ କହ ମନୁଁ ପାଶୋରିଣ ଗଲ ।
ଈଶ୍ୱର ମାୟାରେ ମୁନି ମାନଙ୍କର ମଧ୍ୟ
ମତିଭ୍ରମ ହେବା କଥା ନୁହଇ ଅସାଧ୍ୟ ।
ସନକ ସନନ୍ଦ ସନାତନ ଯେ ଆବର
ଚତୁର୍ଥ ଅଟନ୍ତି ଯେଉଁ ସନତ କୁମାର ।
ବ୍ରହ୍ମଙ୍କ ଶରୀର ମଧ୍ୟୁ ଏ ସବେ ଜନ୍ମ ଲେ
ସୃଷ୍ଟିକର ବୋଲି ତାଙ୍କୁ ବ୍ରହ୍ମା ଆଜ୍ଞା ଦେଲେ ।
ନ ଶୁଣି ତାହାଙ୍କ କଥା ତପ କରିବାକୁ
କାହାରି ସିବାରୁ ସବେ ବନସ୍ତ ମଧ୍ୟକୁ ।
କ୍ରୋଧ ଭରେ ପିତାମହ ହେଲେ ଉଗ୍ରମୂର୍ତ୍ତି
ସେହିକାଳେ ରୁଦ୍ରଗଣଙ୍କର ଉତପତ୍ତି ।
ହୋଇଅଛି ଆହେ ମୁନିଗଣ ମନ ଦେଇ
ଶୁଣ ଏଥୁ ପରେ ଯାହା ହେଲ କହୁଥାଇଁ ।
ସନକ ସାନନ୍ଦ ଦୁହେଁ ଆନନ୍ଦ ବାଚକ
ଆନନ୍ଦରେ ପରିପୂର୍ଣ୍ଣ ଅଟନ୍ତି ବାଳକ ।
ଶ୍ରୀକୃଷ୍ଣ ସନାତନ ନିତ୍ୟ ପୂର୍ଣ୍ଣରୂପ
ତାହାଙ୍କର ଭକ୍ତମଧ୍ୟେ ତାଙ୍କର ସ୍ୱରୂପ ।
ସେ ସକାଶୁ କୃଷ୍ଣ ଭକ୍ତ ହେବାକୁ ଚତୁର୍ଥ
ବାଳକଟି ସନାତନ ନାମ କଲେ ସ୍ୱାର୍ଥ ।
ସନତ ଶବ୍ଦର ଅର୍ଥ ନିତ୍ୟ ବୋଲିଯାଏ
କୁମାରତ ବାଳକଙ୍କୁ ବୋଲନ୍ତି ସବୁଁଏ ।
ଏ ଦୁଇ ପଦକୁ ଯୁକ୍ତ କରି ପ୍ରଜାପତି
ସନତ୍ କୁମାର ନାମ ଦେଲେ ବହି ପ୍ରୀତି ।
ବ୍ରହ୍ମା ଆଉ ବାଳକଙ୍କ ନାମରେ ବ୍ୟୁତ୍ପତ୍ତି
ଶୁଣିଲତ ଯଥାକ୍ରମେ ଆହେ ମହାମତି ।
ନାରଦ ଚରିତ ଏବେ କହିବି ବିସ୍ତାରି
ଶୁଣ ସାବଧାନ ହୋଇ ମନ ସ୍ଥିର କରି ।
ଏହାପରେ ଆନ ଗାଥା କହିବ ଗାୟକ
ଗୀତ ଛନ୍ଦେ ସବଲେଖେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡ ଧାତାଙ୍କଠାରୁ ମୁନିମାନଙ୍କ ଉତ୍ପତ୍ତି ବର୍ଣ୍ଣନେ ନାମ ଷଷ୍ଠ ଅଂଶୋଧ୍ୟାୟ ।

# ସପ୍ତବିଂଶ ଅଧ୍ୟାୟ

## ନାରଦଙ୍କର ବଦାସ୍ୟରେ ଧାତାଙ୍କର ଖେଦ

ଏହାପରେ ଆନକଥା ଶୁଣ ହେଇ ମନ
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟେ ମହାନ ।
ଶ୍ରଦ୍ଧା ଆଉ ଭକତରେ ଯେ ଏହା ପଢ଼ିବ
ଅନ୍ତକାଳେ ବ୍ରହ୍ମ ପଦେ ସେହୁ ଲୀନ ହେବ ।
ସଉତି ବୋଇଲେ ବାରେ ଶୁଣ ହେ ସନକ
ସୃଷ୍ଟି କରଣେ ସୁତଙ୍କୁ ସାବଧୀ ନାୟକ ।
ବୋଇଲେ ହେ ପୁତ୍ରମାନେ ଶୁଣ ମୋର ଗିର
ସରଜନା କର ତୁମ୍ଭେ ଏ ସୃଷ୍ଟି ସତ୍ୟର ।
ନାରଦତ ସେ ନମନ୍ତେ କରୁଥିଲେ ନାହିଁ
ଡାକଣ ତାହଙ୍କୁ ପୁଣି ପାଶରେ ବସାଇ ।
ସତ୍ୟ ତଥ୍ୟ ହିତକର ଅଟେ ଯେଉଁବାଣୀ
କହିଲେ ମଧୁର ଭାବେ ସମସ୍ତକୁ ଜାଣି ।
ବୋଇଲେ ରେ ସୁତ ମୋର ସଦ୍‌ଗୁଣର ନଧି
ସଂସାର ରହସ୍ୟ ତୋତେ କହିବା ଅବଧି ।
ଜ୍ଞାନ ଦ୍ୱୀପ ଶିଖାରେ ତୁ ଅଜ୍ଞାନ ତମିର
ଦୂର କରି ଅଛୁ ପୁଣି ଅଟୁ ଶାନ୍ତ ଧୀର ।
ବ୍ରହ୍ମାଣ୍ଡରେ ସବୁଠାରୁ ପୂଜ୍ୟ ହୋଇନର
ନ ମିଳିବ ଆଉ କେହି ପିଅରଙ୍କ ପରି ।
ବିଦ୍ୟାଦାତା ମନ୍ତ୍ରଦାତା ନୁହନ୍ତି ସମାନ ।
ପିତାର ସଦୃଶ ସେହି ଭକତି ଭାଜନ ।
ଆରେ ସୁତ ମୁଁ ତୋହର ପିତା କନ୍ୟାଦାତା
ଆବର ଅଟଇ ମଧ ପାଳନ କରତା ।
ମୋହର ଉପତ ଲାଗି ମୋ ଅନୁଜ୍ଞା ମାନ
ଗୃହ ଜଞ୍ଜାଳରେ ମନଦେଇ ପତ୍ନୀସେନ ।
ଶ୍ରୀଗୁରୁ ଆଦେଶ ଯେହୁ କରଇ ପାଳନ
ସେହିଟି ଉତ୍ତମ ଶିଷ୍ୟ ମାନଙ୍କେ ପ୍ରଧାନ ।
ଅବଜ୍ଞା କରଇ ଯେହୁ ଅଜ୍ଞାନ ତତ୍ତ୍ୱରେ
ତାହାର ମଙ୍ଗଳ କେବେଁ ନୁହେଁ କେଉଁଠାରେ
ଅକୁଣ୍ଠିତ ଚିତ୍ତେ ଯେହୁ ଗୁରୁଙ୍କ ବଚନ
ଆଦର ସହିତ କରୁଥିବ ଯେ ପାଳନ ।
ସେହି ଯେ ପଣ୍ଡିତ ଜ୍ଞାନୀ ପୁଣ୍ୟବନ୍ତ ନର
ତା ସଙ୍ଗେ ସମାନ କେହୁ ନୁହେଁ ଜନପୁର ।

ସବୁବେଳେ ହେଉଥାଏ ତାହାର ମଙ୍ଗଳ
ଏଥିରେ ସନ୍ଦେହ କିଛି ମନରେ ନ ଭାଳ ।
ବ୍ରହ୍ମଚର୍ଯ୍ୟ ଆଦି ସବୁ ଆଶ୍ରମ ମଧ୍ୟରେ
ଗୃହସ୍ଥଙ୍କୁ ପୁଣ୍ୟବନ୍ତ କେ ହୋଇ ନ ପାରେ
ସ୍ତ୍ରୀ ଶିଶୁହ ପୋଷ ଧନ ପୂରିତ ମନ୍ଦିର
ଅଶେଷ ତପସ୍ୟା ଫଳ ଜାଣରେ କୁମର ।
ଯେଉଁପରି କୂପ ପାଶେ ଥିବା ଜଳ କୁଣ୍ଡ
ପାଶେ ଯାଇ ଗାଈ ଗୋରୁମାନେ ହୋନ୍ତି ତୁଣ୍ଡ
ତେମନ୍ତ ଗୃହସ୍ଥ ଘରେ ପିତୃମାନେ ନିତ
ଅତିଥି ରୂପରେ ଆସି ପ୍ରବେଶ ହୁଅନ୍ତି ।
ଆବର ପୂର୍ଣ୍ଣିମା ଅଦ୍ୟ ପର୍ବମାନ ଯେତେ
ସେ ସମୟେ ପୂଜା ନେବାକୁ ତୋଷିତେ ।
ସମସ୍ତ ଦେବତାମାନେ ସେଠାରେ ମିଳନ୍ତି
ପୂଜା ପାଇ ଗୃହସ୍ଥଙ୍କୁ ଫଳଦେଇ ଯାନ୍ତି ।
ଗୃହୀମାନେ ନିତ୍ୟକର୍ମ ବିଧି ଅନୁସାରେ
କରନ୍ତି ଭକତି ରଖି ଈଶ୍ୱରଙ୍କ ଠାରେ ।
ମର୍ତ୍ତ୍ୟ ଲୋକରେ ସେ ସୁଖଭୋଗ କରି ସାରି
ଦେହଅନ୍ତେ ପୁଣ୍ୟବଳେ ଯାନ୍ତି ସ୍ୱର୍ଗପୁରୀ ।
ନିଜ ଧର୍ମ ପାଳି ଯେଉଁ ଗୃହସ୍ଥ ଚଳଇ
ଖାଇଁ ଥାଉଁ ୨ ସେହୁ ମୁକତି ଲଭଇ ।
ଧନ ଜନ ଗୋପଲକ୍ଷ୍ମୀ ପୁଣ୍ୟ ଯଶ କୀର୍ତ୍ତି
ତାହାପାଶେ ସ୍ୱୟଂ ଆସି ଆଶ୍ରୟ କରନ୍ତି ।
ଯଶ ଅରଜିଲା ଲୋକ ମୃତ୍ୟୁହେଲେ ତାର
ଖାଇଁକରି ରହିଥାଇ ଜୀବନ୍ତ ଶରୀର ।
କୀର୍ତ୍ତିହୀନ ଜନ ଜୀବନରେ ଥିଲେ ହେଲେ
ମଲାପରି ଅଟଇ ସେ ଜାଣିଥାଅ ହେଲେ ।
ଏହିରୂପେ ଧାତାଙ୍କର ବଚନକୁ ଶୁଣି
ଘଡ଼ିଏ ଯାଏ ନାରଦ ମନେ ୨ ଗୁଣି ।
ଉପ୍ତ ଭକ୍ତି ସେନ ମନେ ହରଷ ହୋଇଲେ
ବିନମ୍ର ଭାବରେ ପୁଣି ବଚନ କହିଲେ ।
ବୋଇଲେ ହେ ତାତ ପୂର୍ବେ ଆଉ ଜନକରେ ।
ତର୍କ କରିଥିଲି ଆପଣଙ୍କ ସହିତରେ ।

ସେହି ଶାପ ଯୋଗେ ହେଲ ଗନ୍ଧର୍ବ ବୃଷଳ
ତୁମ୍ଭେ ମଧ୍ୟ ମୋର ଶାପ ପାଇଣ ସେ କାଳ ।
ଅସ୍ପୃଶ୍ୟ ହୋଇ ରହିଲ ସକଳ ଜନରେ
ଦୁହେଁ ଦୁର୍ବିଙ୍କ ଶାପରେ ଏହି ପରକାରେ ।
ପିତା ପୁତ୍ର ହୋଇ ମଧ୍ୟ ପରସ୍ପର ଷଣ୍ଡ
କଲହଇଲେ ଦୈବ ଯୋଗେ କ୍ରୋଧକରି ମତ୍ତ ।
ମୁହିଁ ଏତେକାଳେ ଆସି ହୋଇଲି ମୁକତ
ତୁମ୍ଭେ ମୁକ୍ତ ହୋଇନାହଁ ଆଜପର୍ଯ୍ୟନ୍ତ ।
ଏଣୁ ବୋଲୁଅଛି ଯଦି ଅବରୋଧ କରିବ
ଦୋଷଭଜନା କେବେହେଁ ତହୁଁ ଗୁଣ ନ ଲଭିବ ।
ଶ୍ରୀହରିଙ୍କ ପଦ୍ମପାଦେ ନଷ୍ଟଳେ ଭକତି
କରିବା ପାଇଁ କ ସେ ବଞ୍ଚଇ ଅନୁମତି ।
ସେହି ଏକା ପିତା ବନ୍ଧୁ ପୁତ୍ର ଭାଇ ଗୁରୁ
ଅଧିକ ମଙ୍ଗଳକାରୀ ନାହିଁକେ ତାଠାରୁ
ଅଜ୍ଞାନରେ ପୁତ୍ରେ ଯେବେ ଆସିଲ ମାର୍ଗରେ
ଭ୍ରାନ୍ତ ଅଥବା ଦୋଷ କରନ୍ତି ଭୂଲରେ ।
ଦୟାକରି ଯେଉଁ ପିତା ନବର୍ତ୍ତାଇ ଦେବ
ଉତ୍ତମ ପଥରେ ଯିବାପାଇଁ ଶିଖାଇବ ।
କରୁଣା ସାଗର ବୋଲି ବୁଦ୍ଧି ତାହାଠାରେ
ହୋଇବ ନଷ୍ଟପ୍ରୁ ପୁତ୍ର ମାନଙ୍କର ଖଟେରେ ।
ଶ୍ରୀକୃଷ୍ଣଙ୍କଠାରେ ଭକ୍ତି କରିବା ସୁତକୁ
ନେବ ଯେହୁ ନବର୍ତ୍ତାଇ ଆନ ବିଷୟକୁ ।
ସେ ପିତା ତନୟଙ୍କର ମଙ୍ଗଳ କାମନା
କରୁଅଛି ବୋଲି ମନେ ହେବ କି ଭାବନା ।
ତାର ପରିଗ୍ରହ କଲେ ଦୁଃଖ ବିନା ଆଉ
ନ ମିଳଇ କେଉଁ କଥା ଆହେ ମହାବାହୁ ।
ତପସ୍ୟା ସ୍ବର୍ଗ କାମନା ମୁକ୍ତି ସାଧନର
ପ୍ରତିବନ୍ଧକ ବୋଲିଣ ମନରେ ବିସ୍ତର ।
ତେନ ପରକାରେ ଗୃହୀ ଜନମାନଙ୍କର
ରମଣୀଏ ଆଶ୍ରେକରି ଥାଆନ୍ତି ପାଶର ।
କହୁଅଛୁ ତାହାଙ୍କର ନାମ ମାନ ଶୁଣ
ଭୋଗଯୋଗ୍ୟ ପତିବ୍ରତା କୁଳଟା ଯେ ପୁଣ ।
ଥାଏ ସବୁଙ୍କ ଚିତ୍ତରେ ଭୋଗ ଅଭିଳାଷ
ନିତ୍ତ ବାଞ୍ଛା କରୁଥାନ୍ତି ସ୍ବର୍ଗେ ବହୁ ବାସ ।
ପତିବ୍ରତା ନାରୀ ଆନଜନ ଇସୁକରି
ଶୁଣି ଆପଣାର ଯଶ ଗୁଣ ଇଷ୍ଟକରି ।

ପତି ମାନେ ଚହିଁ କାମ ଭୋଗ ଅଭିପ୍ରାୟେ
ତାର ମନକୁ ରଞ୍ଜାଇ ସେବା କରୁଥାଏ ।
କେବଳ କାମଟିଏ ଭୋଗ୍ୟ ଅଟେ ସେ ନାୟିକା
ମେ ହ୍ବଷ ହୋଇଣ ପତି ସଙ୍ଗ ଇଚ୍ଛେ ଏକା ।
ସେବା କରୁଥାଏ ଭୋଗ ପାଉଥିବା ଯାକେ
କଷ୍ଟତେ ଜଣା ହୋଇଲେ କହେ କଟୁବାକ୍ୟ
ଅସ୍ତ୍ର ଅଳଙ୍କାର ଯେତେ ଧନ ପାଉଥାଏ
ପତି ପାଶୁଁ ଷଣେମାତ୍ର ଅନ୍ତର ନ ହୁଏ ।
ମାତ୍ର ଯେଉଁଦିନ ତାହା ନ ପାଏ ସେ ନାରୀ
ଅନ୍ୟ ପତିପାଶେ ଚାଲିଯାଏ ଇଚ୍ଛାକରି ।
କୁଳଟା ଅଟଇ କୁଳ ଅଙ୍ଗାର ପରାୟେ
କୁଳର ମାନ ମହତ୍ତ୍ବ କରଇ ସେ କ୍ଷୟେ ।
ଲୋକ ଦେଖାଣିଆ ପତି ସେବା କରୁଥାଏ
କିନ୍ତୁ ତିଳେ ମାତ୍ର ଭାବ ଅନ୍ତରେ ନ ଥାଏ
କାମରେ ଆତୁର ହୋଇ ପର ପୁରୁଷକୁ
ସବୁବେଳେ ଇଚ୍ଛା କରୁଥାଏ ସେ ମନକୁ ।
ଆପଣା ପତି ଆଗରେ କପଟ ଆଚାର
କହୁଥାଏ ଗୋଟାପଣେ ଅଟେ ମୁଁ ତୁମ୍ଭର ।
ସଦା ମନ ମଧ୍ୟେ ଜାର ପୁରୁଷେ ଖୋଜଇ
ସୁବିଧା ପାଇଲେ ଗୁପତରେ ସେ ରମଇ ।
ଆବର ଯାର ଗୁରୁଷ ପ୍ରେମରେ ସଢ଼ଣ
ଆପଣା ପତିଙ୍କୁ କେବଳ ମାତ୍ର ଛନ୍ତି ଜାଣ ।
ତେମନ୍ତ ନାରୀଙ୍କୁ ଯେହୁ ବିଶ୍ବାସ କରଇ
ଆହେ ତାତ ନଷ୍ଟପ୍ରୁ ସେ ବିନାଶ ହୁଅଇ ।
ତେନ ପରକାରେ ନାରୀ ଜାତି ଯେ ଅଟନ୍ତି
ଉତ୍ତମ ମଧ୍ୟମ ପୁଣି ଅଧମ ବୋଲନ୍ତି ।
ତାହାଙ୍କ ହୃଦୟ ଯୋଗୀମାନେ ଯେ ଜାଣନ୍ତି
ତେଣୁ ତାଙ୍କ ନିକଟରୁ ଦୂରରେ ରହନ୍ତି ।
ଅଜ୍ଞାନୀମାନେ ନ ଚିହ୍ନି ପାରି ସେ ନାରୀଙ୍କୁ
ପତଙ୍ଗ ପରି ଧାଆନ୍ତି ପୋଡ଼ି ମରିବାକୁ ।
ଶରଦ ପଦ୍ମ ପରାୟେ ରମଣୀଙ୍କ ମୁଖ
ଦେଖିବା ମାତ୍ରକେ ଜାତ ହେଉଥାଏ ସୁଖ ।
ସେମାନେ ହିଁ ଅନଳରେ ପତଙ୍ଗ ସମାନ
ରମଣୀ ପ୍ରେମରେ ପଡ଼ି ହରାଅନ୍ତି ଜ୍ଞାନ ।
କିନ୍ତୁ ଋଷି ମୁନିମାନେ ତେମନ୍ତ ନୁହନ୍ତି
ନାୟିକାଙ୍କ ମୁଖ ଦେଖି କେବେହେଁ ନ ଭୁଲନ୍ତି ।

ଯେଉଁ ସମୟରେ କୋପ କରନ୍ତି ପ୍ରକାଶ
ସେତକାଳ କ୍ଷଣକରେ କରିଦ୍ୟନ୍ତି ଭସ୍ମ ।
ଯୋଗୀଙ୍କର ପ୍ରେମରେ ସେହୁ ନ ଭୁଲନ୍ତି
ତେଣୁ କାମକୁ ଆବାଲ୍ୟ କରୁଁ ଜିଣିଛନ୍ତି ।
ଆନ ମାନଙ୍କ ପାଖରେ କହଣ ନନ୍ଦନା
କରନ୍ତି ରମଣୀମାନେ ତାଙ୍କ ବୁଦ୍ଧ ବଣା ।
ପୁରୁଷଙ୍କ ଠାରୁ ଆଠଗୁଣ ଅଧିକରେ
କାମ ଉଦ୍ରେକ ଥାଏ ନାରୀଙ୍କ ଅଙ୍ଗରେ ।
ଆହାର କରନ୍ତି ମଧ୍ୟ ସେମାନେ ଦ୍ୱିଗୁଣ
କପଟ ବୁଦ୍ଧି କଷ୍ଟୁର ଅଟେ ବହୁଗୁଣ ।
ଆଉର ନିଗୁଣ କ୍ରୋଧ ତାଙ୍କର ଅଟଇ
ମନ୍ଦ ବ୍ୟବହାର ତିନଗୁଣ ଥାଏ ରହି ।
କେଉଁଠି ସ୍ତ୍ରୀଙ୍କ ସାଥେ ଯେ ସଙ୍ଗ ହୁଅଇ
ସତ୍ୟେ ଜ୍ଞାନ ତାହାର ଦେହୁଁ ନାଶ ଯାଇ ।
ପୁରୁଷର ସବୁ ନାଶ କାରଣୀ କାମିନୀ
ତେଣୁ ତାଙ୍କ ସଙ୍ଗ ତେଜ୍ୟା କରନ୍ତି ସୁଜ୍ଞାନୀ ।
ଏପରି ଅନେକ ଦୋଷ ଯେଉଁ ନାରୀଠାରେ
କେଉଁ ସୁଖ ମିଳିବ ବା ତାହାଙ୍କ ସଙ୍ଗରେ ।
ମଳମୂତ୍ର କଫ ବାତ ପିତ୍ତ ଶୁକ୍ର ରକ୍ତ
ଯେଉଁ ଶରୀର ମଧ୍ୟରେ ହୋଇଛି ପୂରିତ ।
ସେଥିରେ କ୍ରୀଡ଼ା କରିଲେ ମିଳିବ କି ଶାନ୍ତି
ବିଚାର କରିଣ କୁହ ହେ ଜଗତ ପତି ।
କାମିନୀ କାଞ୍ଚନ ମୋହ ଯାହାକୁ ଗ୍ରାସଇ
ତେଜ ଓଜ ବର୍ଣ୍ଣ ଆଦି ତାର ନାଶ ଯାଇ ।
ବିଷୟରେ ବାକ୍ୟାଳାପ କରେ ଯେ ନାରୀରେ
ଧନ ଜନ ଆଦି ନାଶ ହୁଏ ଅକ୍ଳେଶରେ ।
ଆଉର ଅଧିକ ଯେହୁ ଆଶକ୍ତ ହୁଅଇ
କ୍ଷୟ ବ୍ୟାଧିରେ ପଡ଼ିଣ ତାର ପ୍ରାଣ ଯାଇ ।
ନାରୀ ବଶ ମାନବର ନ ରହେ ପୌରୁଷ
କଳହ କରିଲେ ମାନ ହୋଇଯାଏ ନାଶ ।
ଏକାନ୍ତ ବିଶ୍ୱାସ କଲେ ସବୁ ନାଶ ହୁଏ
ଏ ସକାଶୁ ସ୍ତ୍ରୀ ସଙ୍ଗ ସୁଖ ଯେ ନ ଥାଏ ।
ଧନୀ ଆଉର ତେଜସ୍ୱୀ ହୋଇବ ଯେ ଜନ
ସ୍ତ୍ରୀ ବଶକୁ ଅଟଇ ସେହି ଯେ ଭଜନ ।

ଧନହୀନ ଆଉ ରୋଗୀ ଯେବେ ହୁଏ ପତି
ଲୋକ ଅପବାଦ ନିନ୍ଦା ଭୟରେ ଯୁବତୀ ।
ସେ ବୃଦ୍ଧ ସ୍ୱାମୀ ପାଶରୁ ଯାଇ ନ ପାରଇ
ଅବହେଳା କଲେ ଅଳ୍ପ ଖାଇବାକୁ ଦେଇ ।
ସର୍ବଦା ମନ ମଧ୍ୟରେ ପାଞ୍ଚେ ସେହୁ ନାରୀ
ମରିଗଲେ ବୃଦ୍ଧ ସୁଖ ହୁଅନ୍ତା ମୋହର ।
ଏମନ୍ତ ମନରେ ବାଞ୍ଛା କରେ ସେ ରମଣୀ
ସମୟରେ ବିଷ ଦିଏ ପ୍ରାଣ ନିଏ ଜାଣି ।
ଏହିପରି ନାନା ରୂପେ ଦୁଃଖ ଭୋଗମାନ
ଗୃହୀ ଲୋକର ହୁଅଇ ଆହେ ପିତା ଜାଣ ।
ଆପଣତ ସର୍ବଜ୍ଞାନୀ କିବା ଅଗୋଚର
ଅଧିକ କହିବା ସିନା ବୃଥା ଅଟେ ଗିର ।
ଧରୁଛି ପୟର ମୋତେ ଅନୁଗ୍ରହ କରି
ବିଦାୟ ଦିଅନ୍ତୁ ତାତ ଯିବି ତପକରି ।
ଆପଣ ଅଟନ୍ତି ଯେଣୁ କଳ୍ପତରୁ ସମ
ଶ୍ରୀକୃଷ୍ଣ ଭକତ ମାତେ ଦିଅ ମହାତମ ।
ଏମନ୍ତ କହି ଚରଣେ ହୋଇ ଦଣ୍ଡବତ
ଆଜ୍ଞାଅରେ ଯିବାପାଇ ମାଗିଲେ ତୁରିତ ।
ପୁଣ ପୁଣ ଭକ୍ତିଭରେ ପ୍ରଣିପାତ କରି
ଉଠିଲେ ଉଦ୍‌ବେଗେ ଦଣ୍ଡ କମଣ୍ଡଳୁ ଧରି ।
ଦେଖି ପ୍ରଜାପତି ତାହା ବିମନ ହୋଇଲେ
ସାମାନ୍ୟ ଜନଙ୍କ ପରି ରୋଦନ କରିଲେ ।
ତାହାପରେ କୁମରକୁ କରି ଆଲିଙ୍ଗନ
ସ୍ନେହରେ ଧରିଲେ କୋଳେ ଦେଇଣ ଚୁମ୍ବନ
ଜାନୁପରେ ବସାଇଣ ଅତି ଆନନ୍ଦରେ
ଘାରି ହୋଇଲେ ନନ୍ଦନ ବିରହ ଚିନ୍ତାରେ ।
ଭୁବନ ସର୍ଜନା କର୍ତ୍ତା ଯୋଗୀଙ୍କର ଗୁରୁ
ହେଲେହେଁ ପୁତ୍ର ଶୋକରେ ସେହୁ ଅତିଶରୁ
ବୈଷ୍ଣବୀ ମାୟାରେ ସେ ମୋହିତ ହୋଇଥିଲେ
ସନ୍ତାନ ମୁଖକୁ ଚାହିଁ ବ୍ୟାକୁଳେ କାନ୍ଦିଲେ ।
ସେ ପିତା ପୁତ୍ରଙ୍କ ପାଦତଳେ କରି ଧ୍ୟାନ
ଗୀତଛନ୍ଦେ ବିରଚିଲ ଯେ କ୍ଷେତ୍ର ମୋହନ ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମଖଣ୍ଡେ ନାରଦଙ୍କର ସାହାଯ୍ୟେ ଧାତାଙ୍କର ଖେଦ,
ବିବରଣେ ନାମ ସପ୍ତବିଂଶୋଽଧ୍ୟାୟ ।

# ଅଷ୍ଟାବିଂଶ ଅଧ୍ୟାୟ

## ଧାତାଙ୍କ ସହିତ ନାରଦଙ୍କର ବାକ୍ୟାଳାପ ଓ ନାରଦଙ୍କର ଶିବଲୋକକୁ ଗମନ

ଏହାପରେ ଯାହାହେଲା ଶୁଣ ଦେଇ ମନ
ସଙ୍କେତ ବୋଇଲେ ସୃଷ୍ଟି ଋଷିଙ୍କୁ ବଚନ ।
ବିଧାତା ନାରଦେ ସୃଷ୍ଟି ବୋଇଲେକ ଗିର
ତପ ଅଭିଳାଷୀ ହୋଇ ଯାଉଛୁ କୁମର ।
ସଂସାର ସର୍ଜନା କରି ମୋର କି ହୋଇବ
ଶ୍ରୀକୃଷ୍ଣଙ୍କ ଅଗ୍ରତରେ କହିଦେବ ସବ ।
କାହିଁପାଇଁ ମୋହ ଜଞ୍ଜାଳରେ ପାଶି ଦେବ
ଗୋଲକ ନାଥଙ୍କୁ କହି ନିସ୍ତାର ପାଇବ ।
ସନକ ସନନ୍ଦ ସନାତନ ପଞ୍ଚଶିଖ
ସନତ କୁମାର ଆଦି ସତଙ୍କର ମୁଖ୍ୟ ।
ଅରୁଣୀ ହଂସୀ ଆବର ବୋଢୁ ଆଦିକରି
ପୁତ୍ରଗଣ ମାନେ ଗଲେ ତପସ୍ୟା ଆଚରି ।
କି ଲଭ ହୋଇବ ମୋର ସଂସାର କାର୍ଯ୍ୟରେ
ପରିଶ୍ରମ କମା ମୁହିଁ କରିବ ବୃଥାରେ ।
ମରୀଚ ଅଙ୍ଗିର ଭୃଗୁ କ୍ରତୁ ମନୁ ଅତ୍ରି
କର୍ଦ୍ଦମ ପ୍ରଚେତା ରୁଚ ମୋର ବଶବର୍ତ୍ତୀ ।
ସମସ୍ତଙ୍କ ଠାରୁ ବଳି ଅଟଇ ବଶିଷ୍ଠ
ସକଳ ପୁତ୍ରଙ୍କ ମଧ୍ୟେ ସେହି ଏକା ଶ୍ରେଷ୍ଠ ।
ମୋର ବୋଲରେ ଏମାନେ ଜଗତକୁ ଯାଇ
ଆରମ୍ଭିଲେ ସୃଷ୍ଟି କାର୍ଯ୍ୟ ଆଜ୍ଞା ଶିରେ ବହି ।
ଅନ୍ୟ ପୁତ ମାନେ କଥା ନ ମାନିଣ ଗଲେ
ନିଜ ଇଚ୍ଛା ଅନୁସାରେ ତପରେ ମାତିଲେ ।
ମୁଁ କମା ଏ ସଂସାରରେ ପଡ଼ି ଅବିରତ
ଦିବାରାତ୍ର ଧାଇଁ ଧାଇଁ ହେବ ହରକତ ।
ଆରେ ପୁତ୍ର ଶୁଣ ଏବେ ମୋହର ବଚନ
ବେଦ ଶାସ୍ତ୍ର ମଧ୍ୟରେ ଯା ହୋଇଛି ଲିଖନ ।
ଲୋକରେ ଆଦୃତ ହୋଇ ପରଂପରା କ୍ରମେ
ଚତୁର୍ବର୍ଗ ଫଳ ପୁଣି ପ୍ରାପ୍ତ ହୁଏ ଭବେ ।
ଦେଖ ଏ ଜଗତ ମଧ୍ୟେ ସର୍ବ ଜ୍ଞାନୀମାନେ
ଧର୍ମ ଅର୍ଥ କାମ ମୋକ୍ଷ ଲୋଡ଼ୁଛନ୍ତି ମନେ ।
ଏହି ଗୃହଗୋଟି କଥା ବେଦ ପୁରାଣରେ
ଉତ୍ତମ ବୋଲି କଥିତ ହୋଇଛି ସର୍ବରେ ।

ଭଦ୍ରବ୍ୟକ୍ତିଙ୍କ ମେଳରେ ସଭା ସମିତିରେ
ଏହାର ପ୍ରଶଂସା ହୁଏ ଜାଣ ସବୁଠାରେ ।
ଧର୍ମତ ଅଟଇ ବେଦ ଶାସ୍ତ୍ରର ସମ୍ମତ
ଅଧର୍ମ ହେଉଛି ଭିନ୍ନ ଜାଣ ଅଟେ ସୁତ ।
ସେହି ଗୃହ ଆଶ୍ରମର ସ୍ୱରୂପକୁ ମୁହିଁ
କହୁଅଛୁ ତୋରେ ପୁତ୍ର ଶୁଣ ମନଦେଇ ।
ବ୍ରାହ୍ମଣ ସନ୍ତାନ ଦଶ ବର୍ଷ ବୟସରେ
ଦଶନର୍ମେ ଯଜ୍ଞସୂତ୍ର ପକାଏ ସ୍କନ୍ଧରେ ।
ଗୁରୁଙ୍କଠାରେ ବେଦଶାସ୍ତ୍ର କରଇ ପଠନ
ଗୁରୁଙ୍କ ଦକ୍ଷିଣା ଦିଏ ଟୋପେ ନେଇ ଧନ ।
ସେ ଅନ୍ତେ ଉତ୍ତମ କୁଳୁଁ କନ୍ୟାଟିଏ ଆଣି
ଗ୍ରହଣ କରଇ ବିଧିମତେ ତାର ପାଣି ।
ସେ ସ୍ତ୍ରୀ ଯଦି କୁଳଜ ହୋଇ ଥିବାରୁଟି ଜାଣ ।
ହୁଏ ସତୀ ପତିବ୍ରତା ଗୁଣରେ ନିପୁଣ ।
ଉଚ୍ଚବଂଶେ କେବେହେଲେ ଗୁଣହୀନ ହୋଇ
ପୁତ୍ର କନ୍ୟା ମାନେ ଜାତ ନ ହୁଅନ୍ତି କାହିଁ ।
ଯେସନ୍ତ ପର ପଦ୍ମରାଗ ମଣିର ଖଣିରେ
କାଚମଣି ଜାତ କେବେହେଁ ନ ହୁଏ ତହିଁରେ ।
ଅସାଧୁ କୁଳରେ ଜନ୍ମ ଥାଏ ଯେଉଁ ନାରୀ
ସେହି ଏକା ହୁଏ ପିତା ମାତା ଦୋଷ ଧାରୀ ।
ଅଜନସୁ ସତୀ ଦୁଷ୍ଟା ସ୍ୱେଚ୍ଛାଚାରୀ ହୁଏ
ପତି ପ୍ରତି ଭକ୍ତିଭାବ ନରଖେ ଟିକିଏ ।
କମଳାଙ୍କ କଳାରେ ଯେ ନାରୀ ହୋଇନ୍ତି ଜାତ
ତାଙ୍କଠାରେ ପୂରିଥାଏ ସୁଗୁଣ ବହୁତ ।
ସ୍ୱର୍ଗ ବେଶ୍ୟାଙ୍କର ଅଂଶ ଥାଏ ଯାହାଠାରେ
ଅସାଧୁ କୁଳେ ସେମାନେ ଜନ୍ମନ୍ତି ମର୍ତ୍ତ୍ୟରେ ।
ସବୁ ଦୋଷ ତାଙ୍କଠାରେ ହୁଅଇ ପୂରିତ
ନ ଜାଣନ୍ତି କୁଳଶୀଳ ମହତ କେମନ୍ତ ।
ପତିବ୍ରତା ସତୀ ସାଧ୍ୱୀ ଗୁଣବତୀଙ୍କର
ପତି ଅଟଇ କେବଳ ପରମ ଈଶ୍ୱର ।
ହେଲେହେଁ ନିର୍ଗୁଣ ତାକୁ ସେବା ସେ କରଇ ।
ତାର ପରଶଂସା ଶତ ମୁଖେ ସେହି ଗାଇ ।

କୁଳଟା ରମଣୀମାନେ ପର ସେବା ଛାଡ଼ି
ସତ ପୁରୁଷ ସଙ୍ଗରେ ପାପେ ଥାନ୍ତି ବୁଡ଼ି ।
ଏ ସକାଶୁ ପଣ୍ଡିତେକେ ଉତ୍ତମ ବଂଶରେ
ବିବାହ କରିବ କନ୍ୟା ବାଛି ସୁଚିତ୍ତରେ ।
ତାଙ୍କଠାରୁ ଯେଉଁ ପୁତ୍ର କନ୍ୟା ହେବେ ଜାତ
ବୃଦ୍ଧ କାଳରେ ସହାୟ ହୋଇବେ ବହୁତ ।
ତପସ୍ୟା କରିବା ପାଇଁ ତାହାଙ୍କ ସଙ୍ଗରେ
ନେଲେ ବହୁତ ସୁଫଳ ମିଳଇ ଅଚିରେ ।
ବେଦବେଦନ ପରେ ପୁଣି ଭିକ୍ଷୁକ ଭାବରେ
ଚତୁର୍ଥ ଆଶ୍ରମ ସେବା କରିବ ଶେଷରେ ।
ସ୍ୱରଗୋଟି ଆଶ୍ରମରେ ଏହିପରି ରହି
କାଳ କଟାଇଲେ ଲୋକେ ଧନ୍ୟ ସେ ବୋଲାଇ
କେବଳ ଦୁଷ୍ଟା ଭାର୍ଯ୍ୟା ଘରେ ରଖିବାର
ଅଟଇ ଯେସନେ ସାପମୁଖେ ହେବା କର ।
ତୁମ୍ଭେତ ତୁଳେ ପୁଣି ଅଟ ଗୁଣବନ୍ତ
ପଢ଼ିଅଛ ମୋହଠାରୁ ସବୁ ବେଦତନ୍ତ୍ର ।
ଗୁରୁ ଦକ୍ଷିଣା ସ୍ୱରୂପ ମାଗୁଅଛି ମୁହିଁ
ଭାର୍ଯ୍ୟା ଗ୍ରହଣ ତୁମ୍ଭେ କର ତୋଷ ବହି ।
ପୂର୍ବ ଜନମରେ ଯେଉଁ ସତୀ ମାଳାବତୀ
ହୋଇଥିଲା ତୁମ୍ଭର ସେ ପ୍ରାଣ ପ୍ରିୟବତୀ ।
ଶୁଭବେଳେ ତାର ପାଣି ଯେ ଗ୍ରହଣ କରି
ସାଂସାରିକ ସୁଖ ଭୋଗେ ନିଶିଦିନ ହର ।
ମନୁବଂଶରେ ଜାତ ସେ ଅଟନ୍ତ ତନୟ
ସାଧୁତା ଗୁଣରେ ସେ ବୋଲନ୍ତ ଅଦ୍ୱିତୀୟ ।
ତାହାଙ୍କ ଗୁଣରେ ଜାତ ହୋଇ ସେ କାମିନୀ
ତପସ୍ୟା କରୁଛି ତୁମ୍ଭ ସଙ୍ଗ ଇଚ୍ଛା ଘେନି ।
ରତ୍ନମାଳା ବୋଲି ନାମ ହୋଇଅଛି ତାର
କମଳା ସଦୃଶେ ରୂପେ ଦିଶେ ମନୋହର ।
ପୁଣି ସେ ପବିତ୍ରଭୂମି ଭାରତବର୍ଷରେ
ତୁମ୍ଭଙ୍କୁ ପତି ସ୍ୱରୂପେ ଲଭିବା ମନରେ ।
ତପ କରୁଥିବାରୁଟି ବୋଲୁଅଛି ମୁହିଁ
ତୁମ୍ଭ ବିନା ତାର ଫଳ ଯିବ ବ୍ୟର୍ଥ ହୋଇ ।
ଶାସ୍ତ୍ରରେ ତ ଲେଖାଅଛି ବିଜ୍ଞବନ୍ତ ନର
ଭାର୍ଯ୍ୟା ଘେନଣ ଆଗ କରେ ଘର ଦ୍ୱାର ।
ନବଢ଼ିଲେ ଭୋଗ ଇଚ୍ଛା ତପ କରିବାକୁ
ଧନ ସମ୍ପଦ ଛାଡ଼ି ଯିବ ଅରଣ୍ୟକୁ ।
ତଦନ୍ତରେ ମୋକ୍ଷ ପାଇଁ ସନ୍ନ୍ୟାସୀ ହୋଇବ
କ୍ରମେ କ୍ରମେ ଭିକ୍ଷୁଧର୍ମ ଆଶ୍ରୟ କରିବ ।
ଅଟଇ ବ୍ୟବସ୍ଥା ପିତା ଏହି ପରକାରେ
ତୁମ୍ଭେ ଯେ ନ ଶୁଣ ମୋହ ବଚନ କର୍ଣ୍ଣରେ ।
ଶାସ୍ତ୍ରଜ୍ଞ ବ୍ୟକ୍ତିଏ ପୁଣି ଯାହା କହିଛନ୍ତି
ସେକଥା କହିବା ଶୁଣ ତୋଷକରି ମତି ।
ବଇଷ୍ଣବ ମାନଙ୍କର ବିଷ୍ଣୁପୂଜା ବିଧି
ଅନ୍ୟକର୍ମ ଅପେକ୍ଷାରେ ଅଟଇ ପ୍ରସିଦ୍ଧି ।
ତୁମ୍ଭେ ଶ୍ରେଷ୍ଠ ବଇଷ୍ଣବ ହୋଇଅଛ ଯେଣୁ
ବିଷ୍ଣୁପୂଜା କର ଗୃହ ମଧ୍ୟେ ରହି ତେଣୁ ।
ଆହାର ଅନ୍ତରେ ପୁଣି ବାହ୍ୟଦେଶେ ହରି
ଥାଆନ୍ତି କୋଟିଏ ପୁଣ୍ୟ ନୁହେ ସମସରି ।
ହରିଙ୍କ ଚରଣେ ଭକ୍ତି ନ କରିବା ଲୋକ
ଅଧର୍ମ ଅରଜ ଅନ୍ତେ ଲଭେ କୁମ୍ଭୀପାକ ।
ହରିଙ୍କ ଭଜନ ଗୋଟି ତପସ୍ୟା ଅଟଇ
ଭାବିବାକୁ ଏ ସମ୍ବନ୍ଧେ କଥା କିଛି ନାହିଁ ।
ଯେଉଁଠାରେ ଥିଲେ ହେଲେ ଶ୍ରୀକୃଷ୍ଣ ଭକତ
କାଳେ ପୁଣ୍ୟ ହୁଏ ଜାଣ ଆହେ ମହାମତ ।
ଏ ସକାଶୁ ତୁମ୍ଭେ ଏବେ ମୋ ବଚନ ମାନ
ଗୃହେ ରହି ଶ୍ରୀକୃଷ୍ଣଙ୍କୁ ଭଜ ପ୍ରତିଦିନ ।
ଗୃହୀ ଯେଉଁ ସୁଖଭୋଗ କରେ ସଂସାରେଥାଇ
ଗୃହହୀନ ଲୋକେ ତାହା ପାଇବ ବା କାହିଁ ।
ରୂପବତୀ ଯୁବତୀର ରତିରସ ଭୋଗ
ସଂସାରରେ ଅଟଇ ସେ ମର୍ତ୍ତ୍ୟତଳ ସ୍ୱର୍ଗ ।
ସ୍ତ୍ରୀ ପୁରୁଷର ଅଙ୍ଗସଙ୍ଗ ସୁଖ ଏକାସାର
ତାହାଙ୍କୁ ଇଚ୍ଛା କରନ୍ତ ପୁଣ୍ୟବନ୍ତନର ।
ସବୁଦ୍ରବ୍ୟ ଠାରୁ ଭାର୍ଯ୍ୟା ହେବାରୁ ଅଧିକ
ପ୍ରିୟା ବୋଲି ତାର ନାମ ଦେଇଥାନ୍ତି ଲୋକ
ଏ ବାହାରେ ପୁତ୍ରଙ୍କର ଅଙ୍ଗସ୍ପର୍ଶ ସୁଖ
ଦରଶନ କରିବାର ଅଟେ ବଡ଼ ସୁଖ ।
ପୁତ୍ରପାଇଁ ଆବଶ୍ୟକ ହୁଅଇ କାମିନୀ
ତା ତହୁଁ ଅଧିକ ପୁତ୍ର ଅଟେ ସେହି ଘେନି ।
ପୁତ୍ରଠାରୁ ବଳି ପ୍ରିୟବନ୍ଧୁ କେହି ନାହିଁ
ଆତ୍ମାର ସମାନ ଜାଣ ହୋଇଥାଏ ସେହି ।
ବଳରେ ବା କଉଶଳେ ସମସ୍ତଙ୍କୁ ଜୟ
କରିପାଏ କିନ୍ତୁ ପୁତ୍ର ଅଟଇ ଅଜେୟ ।

ପ୍ରିୟତମ ପୁତ୍ର ଠାରେ ସକଳ ସମ୍ପର୍କି
ଅର୍ପଣ କରନ୍ତି ଲୋକେ ତୋଷ ବନ୍ଧ ଅତ ।
ଏହାଶୁଣି କହି କୁନ ହେଲେ ଦେବବର
ତା ଶୁଣି ନାରଦ ମୁନ ଜ୍ଞାନୀଙ୍କ ଶେଖର ।
ଧର୍ମ ଅର୍ଥ ସମ୍ପନ୍ନ ବଚନ ଉଚ୍ଚାରି
ବୋଇଲେ ମୋଠାରୁ ଶୁଣ ଆହେ ଭୃଗଧାରୀ ।
ଧର୍ମ ଶାସ୍ତ୍ର ଅର୍ଥ ସବୁ ଜାଣିକରି ଯେବେ
ପୁତ୍ରକୁ ଅସତ ମାର୍ଗେ ଚଳାଇବ ତେବେ ।
ବସ୍ତାକୁ ବୋଲଣ ସେହି ପିତାକୁ କପଟ
ବୋଲିବା ଏକଥା ମୋତେ କହୁଚ ବସ୍ତୁରି ।
ଜଳଫେଣ ପରି ସିନା ଅଟଇ ସଂସାର
ମୁହୂର୍ତ୍ତି ମଧ୍ୟରେ ହୋଇପାରେ ଘୁରଖାର ।
ପାଣିର ଉପରେ ଗାରଟିଏ କାଟିଦେଲେ
ଯେମନ୍ତ ସେ ନରହଇ କ୍ଷଣକ ମଧ୍ୟରେ ।
ସେହିପରି ଏ ଜଗତ କ୍ଷଣେ କ୍ଷଣେ ଆନ
ହେଉଅଛୁ ପୁଣି ଦେଖୁଅଛୁ ତ ନୟନ ।
ତଥାପି ବିଷୟ ଭୋଗ ସୁଖ ବୋଲି ଯାହା
କହୁଛ ଆପଣ ମୋତେ ନ ରୁଚଇ ତାହା ।
ନଶ୍ବର ଭବରେ ଯେହୁ ଶ୍ରୀହରି ଭଜନ
କରଇ ତାହାର ପାପ ହୁଅଇ ମୋଚନ ।
ଏ ସଂସାର ସାଗରକୁ ହରିନାମ ସାର
ଭଜନ କରିଲା ଜନ ତହିଁ ହୁଏ ପାର ।
ଶ୍ରୀହରିଙ୍କ ନାମ ଯେହୁ ଅନ୍ତରେ ଭଜଇ
ସର୍ବଦା ଅନ୍ତର ତାର ପବିତ୍ର ହୁଅଇ ।
ଏ ଭବ ସଂସାରେ କେହି ନୁହଁଇ କାହାର
ଏକ ମାତ୍ର ହରିନାମ ଯେ ସଖା ସୋଦର ।
ଅନ୍ତକାଳେ ପିଣ୍ଡୁ ଜୀବ ଯିବା ସମୟରେ
ଶ୍ରୀକୃଷ୍ଣଙ୍କ ବିମାନରେ ଗମଇ ଅମରେ ।
ଦେବତାମାନେ ଯେପରି ଭୋଗ ଭୁଞ୍ଜୁଛନ୍ତି
ତେମନ୍ତ ଭବରେ ମଧ୍ୟ ଭୋଗ ଭୁଞ୍ଜେ ନିତ ।
ପାପୀଜନ ମାନଙ୍କର ନିମନ୍ତେ ଟି ଜାଣ
ରୌରବ ନରକ ହୋଇଅଛଇଁ ନିର୍ମାଣ ।
ପୁଣି ଭିନ୍ନ ଭିନ୍ନ ନର୍କ ହୋଇଛୁ ବିସ୍ତାର
କୁମ୍ଭି ପାକ ବା ଶୋଣିତ ନରକ ଆଦର ।
ଯିଏ ଯେତେ ପ୍ରକାର ପାପ କରିଥାଏ
ସେହି ଅନୁସାରେ ଦଣ୍ଡ ତାକୁ ଦିଆଯାଏ ।

କଲୁ ପୁଣ୍ୟବାନ ଜନ ପାଶକୁ ମାତର
ନ ଆସନ୍ତି ଯମଦୂତେ ଶୁଣ ତପୀବର ।
ଧର୍ମ ଅର୍ଥ ସତ୍ୟ ଆଉ ସତ୍ୟ ଅର୍ଥ ବେଦ
ଯୋଗୀଜନ ମାନଙ୍କର ଅଟେ ଏ ସମ୍ପଦ ।
ସଦଗୁରୁ ସେବା କଲେ ଏ ସବୁ ମିଳଇ
ତେଣୁ ଗୁରୁଟି ଈଶ୍ବର ଶୁଣ ମନଦେଇ ।
ଧର୍ମ ବିପରୀତ ଶିକ୍ଷା ଦିଏ ଯେଉଁ ଜନ
ପିତା ହେଲେ ମଧ୍ୟ ଶତ୍ରୁ ଅଟଇ ସେ ଜାଣ ।
ହେ ପିତର ଏହିପରି ବେଦର ବଚର
ମାତ୍ର ମୂର୍ଖ ଅଟଇ ଯେ ତନୟ କୁମର ।
ଏଥିଲାଗି ତବ ଆଜ୍ଞା ପାଳନ କରିବ
ନର ନାରାୟଣଙ୍କର ଆଶ୍ରମକୁ ଯିବ ।
ନାରାୟଣଙ୍କର ଗାଥା ସେହିଠାରେ ଶୁଣି
ଦାର ପରିଗ୍ରହ ପଛେ କରିବ ମୁଁ ପୁଣି ।
ଏହି ପ୍ରକାରେ ନାରଦ କହିଲେ କାଳରେ
ଆକାଶୁ ସୁମନ ବୃଷ୍ଟି ହେଲା ତାଙ୍କ ଶିରେ ।
ପୁଣି ନାରଦ ଧାତାଙ୍କ ପାଦତଳେ ପଡ଼ି
ବୋଇଲେକ ଅତି ବିନୟରେ କରଯୋଡ଼ି ।
ହେ ଜନକ ଯେଣାକରି ବିମତ ପୁତ୍ରର
ବାରେ ମାତ୍ର ଶ୍ରୀକୃଷ୍ଣଙ୍କ ମନ୍ତ୍ର ଦାନ କର ।
ଯହିଁର ଜୀବର ଗତି ମୁକତି ହୁଅଇ
ସେହି ମନ୍ତ୍ର ଗୋଟି ମୋତେ ଦିଅନ୍ତୁ ଗୋସାଇଁ
ସେ ଅଭୟ ପାଦପଦ୍ମ କରି ଦରଶନ
ତାହାଙ୍କ ପ୍ରେମ ଅମୀୟ ଭକ୍ତି କରି ପାନ ।
ପରେ ଆପଣଙ୍କ କଥା ରକ୍ଷା କରି ମୁହିଁ
ଘର ସଂସାରେ ପ୍ରବୃତ୍ତ ନିଶ୍ଚେ ହୋଇବଇଁ ।
ଶୁଣି ଧାତା ବୋଇଲେକ କୋମଳ ବଚନେ
ଯାହା କହିଲୁରେ ଧନ ବୁଝୁଅଛୁ ମନେ ।
ପ୍ରକୃତରେ ହରିନାମ ଏ ସଂସାରେ ସାର
ମୋଠେ ଯା କହିଲୁ ମନ୍ତ୍ର ଦେବାକୁ କୁମର ।
ତାହାର କାରଣ ବାରେ ଶୁଣ ଦେଇ ମନ
ପିତା ଆଉ ଭର୍ତ୍ତା ଦୁଇ ଅଟନ୍ତି ସମାନ ।
ଯାଙ୍କଠାରୁ ମନ୍ତ୍ର ନେବା ନୁହଁଇ ଉଚିତ
ଏହା ମଧ୍ୟ ଲେଖା ହୋଇଅଛି ନାନା ଶାସ୍ତ୍ର ।
ଆଦର ମନ୍ତ୍ର ଦେବାକୁ ଯେ ଅନୁପଯୁକ୍ତ
ତାହାଙ୍କର ନାମ ମନ ଦେଇ ଶୁଣ ସୁତ ।

